ନିର୍ମଳ ଦେଖି କମଳଆଖି । ନିଜ ସ୍ଥାନେ ଗୋବର୍ଦ୍ଧନଗିରି ରଖି ।
ବଳଭଦ୍ର ଶ୍ରୀକୃଷ୍ଣଙ୍କୁ କୋଳ କଲେ । ପୂଜାକରି ଗୋପିମାନେ ବନା-
ଇଲେ । ସୁଖେ ସମସ୍ତେ ନିଜସଦନେ ମିଳ । କୃଷ୍ଣ କଥା ଅଦଭୁତ
ବୋଲି ଭାଳ । ଇନ୍ଦ୍ର ବୋଲଇ ଏବେ କରିବି କସ । ପ୍ରଭୁଠାରେ
ମୁଁ ନ ଜାଣି କଲି ଦୋଷ । ଏବେ ବୋଲି ସୁରଭିକୁ ସଙ୍ଗେ
ଘେନି । ବୃନ୍ଦାବନକୁ ଗଲେ ସହସ୍ରଯୋନି । ଦଣ୍ଡବତ ହୋଇଲା
କୃଷ୍ଣଙ୍କୁ ଦେଖି । ସ୍ତୁତି କରଇ ସହସ୍ରଆଖି । ଜୟ ଜ୍ୟୋତିସ୍ୱରୂପ
ଭକତ ବନ୍ଧୁ । ଜୟ ମହାମହିମ କରୁଣାସିନ୍ଧୁ । ଦାସବତ୍ସଳ ଗର୍ବଗଞ୍ଜନ
ରାଜା । ରକ୍ଷା ନ କଲେ ନାଶ ଗଲନ୍ତି ପ୍ରଜା । ସ୍ତୁତି ଶୁଣି ପ୍ରସନ୍ନ
ହୋଇଲେ ହରି । ଇନ୍ଦ୍ର ବୋଲେ ମିବ ଅଭିଷେକ କରି । କୃଷ୍ଣ
ଦିବ୍ୟ ଆସନ ଉପରେ ବସି । ଦେବମାତା ସ୍ତୁତିକରୁଛନ୍ତି ଆସି ।
ପୁଷ୍ପ ବୃଷ୍ଟିକରନ୍ତି ଗନ୍ଧର୍ବମାନେ । ଅପସରା ନାଚନ୍ତି ହରଷମନେ ।
ତୀର୍ଥଜଳ ଆଣିଥିଲେ ଗଜବର । ଅଭିଷେକ କଲେ ଋଷି ସୁରାସୁର ।
ଇନ୍ଦ୍ର ବୋଲେ ଯେ ତୁମ୍ଭେ ଗାଈଙ୍କ ବନ୍ଧ । ତେଣୁ ଗୋବିନ୍ଦ ନାମ
ପରମାନନ୍ଦ । କୃଷ୍ଣଆଜ୍ଞାରେ ଇନ୍ଦ୍ର ସ୍ୱର୍ଗକୁ ଗଲେ । ନିଜପୁରକୁ
ହରି ବିଜଏ କଲେ । କୃଷ୍ଣଚରଣକମଳସରସିଜେ । ନୃପ ନୃସିଂହ
ଭ୍ରମରବର ଭଜେ ।

—•⁂•—

## ସପ୍ତମ ପୋଇ ।

ଦିନେ ରାମକୃଷ୍ଣ ଗୋପାଳ ସଙ୍ଗେ । ବୃନ୍ଦାବନରେ ବିଜେ କଲେ
ରଙ୍ଗେ । ଯମୁନାକୂଳରେ ଖେଳନ୍ତି ଥିଲେ । ଏମନ୍ତେ ଅନ୍ଧ ସୁତ ଆସି
ମିଳ । ବୋଲଇ ଆପଣ ଖେଳାଅ ମତେ । ଶୁଣି ଶ୍ରୀକୃଷ୍ଣ ବୋଲନ୍ତି
ତୁରିତେ । ଖେଳିବାକୁ ତୋ କି ସାମଗ୍ରୀ ଅଛି । ପୁଣି ଶୁଣି ଦ୍ୱାରେ
ବ୍ରାହ୍ମଣବତ୍ସ । ଉତ୍ତର ପାଣି ଯେ ନମୁନମୁଣି । ଏ ଭିନ୍ନ ପଦାର୍ଥ
ଅଛି ମୁଁ ଆଣି । ଅନ୍ଧପୁଅକୁ ଖେଳାଇଲେ ହରି । ଧାଇଁଣ ପୋତ

ବେନବାଗ୍ ତୁର । ଅନ୍ଧପୁଅ ଡନ୍ଦୁଁ ଘେନଲା ବାଗେ । ଜାଇଣ
ଗଡ଼ଲା ଶ୍ରୀକୃଷ୍ଣ ଦଗେ । ଉମ୍ବାପାଡ଼ି ମୁଣି ଉତ୍ତରୀୟର । ବ୍ରାହ୍ମଣ ସୁତ-
ଠାରୁ ନେଲେ ହର । କୃଷ୍ଣଙ୍କୁ ବୋଲଇ ବ୍ରାହ୍ମଣସୁତ । ଜାଇଣ ଥରେ
ତୁମ୍ଭେ ଆଉ ଯୋଉ । ଜାଉଣ ପଡ଼ିଲା ବ୍ରାହ୍ମଣଭାଗେ । ଜାଣି
କୃଷ୍ଣ ତା ଭାଙ୍ଗିଦେଲେ ବେଗେ ॥ ଅନ୍ଧପୁଅ ଯେ ଅତିକୋପ କରି ।
ବୋଲଇ ଶ୍ରୀକୃଷ୍ଣ ବସନ ଧରି । ତୁମ୍ଭ ବେଳକୁ ତୁମ୍ଭେ ନେଲ ଜିଣି ।
ମୋହ ବେଳକୁ ଭାଙ୍ଗିଦେଲ ପୁଣି ॥ ଦଅ ମୋହର ସାମଗ୍ରୀମାନ ।
ନୋହିଲେ ଛାଡ଼ିବ ନାହିଁ ବସନ ॥ କୋପେ କୃଷ୍ଣ ତାଙ୍କୁ ଚାପୁଡ଼ା ମାରି ।
ଗୋପାଳେ ତାହାଙ୍କୁ ନେଲେ ଉଣ୍ଟାଇ ॥ ଏକ ଗୋପାଳ ବୋଲେ
ଅହେ ହରି । ଏହାଙ୍କୁ ମାଇଲ ଅନୀତି କରି ॥ ଅନ୍ୟର ହୋଇ ଏ
ବନରେ ଥିବା । ଯେ ଯାହା ବୋଲିବ ତାହା ଶୁଣିବା ॥ ସୁବଳ
ଏଠାରେ ଆଉ ତୁ ରହି । ଉଦବସ୍ତ୍ରା [illegible] ଏମନ୍ତ କହି ॥ ଏମନ୍ତେ
ସୁତଙ୍କୁ ନୋଡ଼ିଇ ଅ[illegible] । ନ ପାଇ ତାହାକୁ ହୋଇଲା ଧନ୍ଦ ॥
ପଥରେ ଦେଖିଲା ଏକ ବ୍ରାହ୍ମଣ । ବୋଲଇ କାହାକୁ ଖୋଜ
ଆପଣ ॥ ଅନ୍ଧ ବୋଲଇ କାହିଁଗଲା ସୁତ । ବ୍ରାହ୍ମଣ ବୋଲେ ତା
ରୂପ କେମନ୍ତ । ଅନ୍ଧ ବୋଲଇ ଅଳପ ବୟସ । ପାଡ଼ୁଆ ଖୋଲ ମୁଣି
ଉତ୍ତରବେଶ ॥ ବ୍ରାହ୍ମଣ ବୋଲଇ ଯମୁନାକୂଳେ । ଥିଲା ତୋ ସୁତ
ଗୋପାଳଙ୍କ ମେଳେ । ଅନ୍ଧ ବୋଲଇ ମୋତେ ଘେନ ଯାଅ ।
କାହିଁଛି ମୋର ପୁଅ କହ ତୁଅ । ବ୍ରାହ୍ମଣ ଅନ୍ଧଙ୍କୁ ସଙ୍ଗେ ଘେନିଲା ।
ଯମୁନାକୂଳେ ପୁଅକୁ ଭେଟିଲା ॥ ଅନ୍ଧପୁଅ କର ଧରି ବଦନ । ବୋଲଇ
ଅହେ କମଳନୟନ ॥ ଏତେବେଳଯାଏ ଥିଲୁ ତୁ କାହିଁ । ତୋତେ
ନ ଦେଖି ପ୍ରାଣ ରହୁ ନାହିଁ ॥ ଉତ୍ତର ପାଡ଼ୁଆ ମୁଣି କାହିଁ ତୋର ।
ଦେହର ଲାଗୁଛି ଧୂଳିଧୂସର ॥ ସୁତ ବୋଲେ ତାତ ଶୁଣ ମୋ ବାଣୀ ।
ଧୂଳି ଖେଳରେ କୃଷ୍ଣ ନେଲେ ଜିଣି । ମୋର ବେଳକୁ ସେ ଭଙ୍ଗାଇ
ଦେଲେ । ମାଗିଲି ସେ ଚାପୁଡ଼େ ମାଇଲେ ॥ ଅନ୍ଧ ବୋଲଇ ତ

ଉଜାଗ୍ରସ୍ତ । ଶୋଳବାର ଚୋର ନୋହେ ଉଚିତ ॥ ମାଇଲେ
ଯେବେ କାହିଁଛନ୍ତି କର । ସୁତ ବୋଲଇ ଏ ବନେ ବହଇ ॥ ତାତ
ହାତ ଧରି ସୁତ ଚଳଲେ । ଏହିଠାରେ କୃଷ୍ଣ ଅଛୁ ବୋଇଲେ ॥
ଅନ୍ଧ ଯେ ଧଇଲା ଗୋପାଳ କର । ଏ କୃଷ୍ଣ ନୁହେଁ ବୋଇଲା କୁମ-
ର ॥ ଅନ୍ଧ ପୁଣି କୃଷ୍ଣ କର ଧଇଲା । ପୁତ୍ର ବୋଲଇ ଏ ମୋତେ
ମାଇଲା ॥ ଅନ୍ଧ ବୋଲଇ ହେ ପଦ୍ମନୟନ । କାହିଁକି ମାଇଲ ମୋର
ନନ୍ଦନ ॥ କରୁଣାକଲେ ସର୍ବସିଦ୍ଧମୁଖ । ବୋଲନ୍ତି ଅନ୍ଧ ମୋ ଶରୀର
ଦେଖ । ଚିହ୍ନ କୁମର ଧୂଳିଅଛି ମାତ୍ର । ବସନହିଁ ମୋର ଦେଇଛୁ
ଚଢ଼ି ॥ କୃଷ୍ଣ ଅଙ୍ଗରେ ଅନ୍ଧ ଚକ୍ଷୁପାଇ । ନୟନାନନ୍ଦସ୍ୱରୂପ ଅନାଇ ॥
ଦଣ୍ଡବତ ହୋଇ ମହୀରେ ପଡ଼ି । ଆନନ୍ଦ ହୋଇଣ ଭୂମିରେ
ଗଡ଼ି ॥ ଉଠି ଶିରେ ପୁଣି ଯୋଡ଼ିଲା କର । ବୋଲଇ ରକ୍ଷାକର
ରକ୍ଷାକର ॥ ନୃପ ପୁଲକିତ ହୋଏ ଏ ଘନ । କୁଣ୍ଠିତ କଣ୍ଠ ମନ ଛଳ
ଛଳ ॥ ଅନ୍ଧକୁ ପ୍ରସନ୍ନ ହୋଇଲେ ହରି । ସଖାଙ୍କ ସଙ୍ଗେ ପୁରେ
ବିଜେ କରି ॥ ଏକାଦଶୀଦିନ ଗୋପାଳ ରାଜା । ଗୃହେ କରୁଥିଲେ
ଗୋପାଳ ପୂଜା ॥ ଦେଖିଣ ବୋଲଇ ଦେବାଧିଦେବ । ମୋତେ ଖଣ୍ଡ
ବାନ୍ଧି ଦେବତା ପୂଜ ॥ ଖଟୁଲି ଉପରେ ବସିଲେ ହରି । ଶଙ୍ଖ ଚକ୍ର
ଗଦା କମଳ ଧରି ॥ ଆନନ୍ଦ ନନ୍ଦ ନନ୍ଦନ ଅନାଇ । ପୂଜା
କଲେ ଫୁଲ ଚନ୍ଦନ ଦେଇ । ଦ୍ୱାଦଶୀଦିନ ପ୍ରଭାତ ସମୟେ । ସ୍ନାନ
କରି ଗଲେ ଗୋକୁଳରାଏ । ସ୍ନାନସାମଗ୍ରୀଙ୍କୁ ନେଇ ଗୋପାଳ । ନନ୍ଦ
ସଙ୍ଗେ ଗଲେ କାଳନ୍ଦୀକୂଳ ॥ ସ୍ନାନ କଲେ ନନ୍ଦ ଜଳରେ ପଶି ।
କୃଷ୍ଣ କୃଷ୍ଣ ବୋଲି ମୁଖରେ ଭାଷି ॥ ବରୁଣ କିଙ୍କର କରଇ ଚରେ ।
କୃଷ୍ଣଙ୍କ ଭେଟ ପାଇବା କେମନ୍ତେ ॥ ଏମନ୍ତ ନନ୍ଦ ଆଗମନ ଜାଣି ।
ଦୂତଙ୍କୁ କହଇ ଏମନ୍ତ ବାଣୀ ॥ ନନ୍ଦଙ୍କୁ ତୁମ୍ଭେ ବେଗେ ନେଇ ଆସ ।
ଧରି ନେଲେ ଦୂତେ ପାଇ ଆଦେଶ ॥ ଏମନ୍ତେ ନନ୍ଦଙ୍କୁ ନ ଦେଖି
ଜନେ । ଗୋପାଳ ରୋଦନ କଲେ ବଚନେ ॥ "ଶ୍ରୀକୃଷ୍ଣମୁଖେ

କହେ ଭୁବନ । ଜଳେ ବୁଡ଼ି ମଲେ ଜୁମ୍ଭର ଭାଇ । ଜାଣି କୃଷ୍ଣ
ଗଲେ ବରୁଣପୁର । ଦେଖି ବରୁଣ ଶିରେ ଯୋଡ଼ି କର । ସ୍ତୁତି
କରି ବୋଲେ ଭଇଲ ଅଜ । ସୁଫଳ ହୋଇଲା ସକଳ କାର୍ଯ୍ୟ ।
କମଳଚରଣ ଦେଖିବା ପାଇଁ । ତୁମ୍ଭ ଭାଇକୁ ଆଣିଲ ଚୋରାଇଁ ।
ବରୁଣ ସଦନୁ ଶ୍ରୀବନମାଳୀ । ନନ୍ଦଙ୍କୁ ଘେନ ନନ୍ଦପୁରେ ମିଳି । ନନ୍ଦ
ଗୋପାଳଙ୍କ ମେଳରେ ବସି । ବରୁଣ ଚରିତ କହେ ବିଶେଷି । ଶୁଣି
ଗୋପାଳ କରନ୍ତି ବିଚାର । ଆମ୍ଭେ ନ ଦେଖିଲୁଁ ବରୁଣପୁର । ଏମନ୍ତ
ବିଚାର କରନ୍ତି ବସି । କରୁଣା କରନ୍ତେ କରୁଣାରାଶି । ସମସ୍ତ
ଯମୁନାଜଳେ ପଶିଲେ । ବ୍ରହ୍ମ ହ୍ରଦରେ ପ୍ରବେଶ ହୋଇଲେ ।
ଦେଖିଲେ ଅନନ୍ତ କୋଳରେ ହରି । ଶଙ୍ଖ ଚକ୍ର ଗଦା କମଳ-
ଧାରୀ । ଲକ୍ଷ୍ମୀ ଢାଳୁଛନ୍ତି ଚାମର ଘେନ । ବୀଣା ବଜାନ୍ତି ବଳ
ପ୍ରଦ୍ୟୁମ୍ନ । ପ୍ରହ୍ଲାଦ ଆଦି ଭକତମାନେ । ସ୍ତୁତି କରୁଛନ୍ତି ହରଷ-
ମନେ । ଦେଖି ସମସ୍ତେ କଲେ ନମସ୍କାର । ବୋଲନ୍ତି କୃପା
କର କୃପା କର । ପୁଣି ଯେ ମାୟା କଲେ କୃପାରାଶି । ସେହି ବସିଲ
ସ୍ଥାନେ ଛନ୍ତି ବସି । ବୋଲନ୍ତି ମାୟା କଲେ ଦେବରାଜ । ସତେକି
ସପନ ଦେଖିଲୁଁ ଆଜ । ଏଥୁ ଅନ୍ତରେ କେତେଦିନ ଶେଷ ।
ଶରତକାଳ ହୋଇଲା ପ୍ରବେଶ । ଅଖଣ୍ଡମଣ୍ଡଳ ଶରଦଶଶୀ । ନିର୍ମଳ
ନିଶି ଦଶଦିଗ ଦିଶି । ଫୁଟିଲେ ସୁଗନ୍ଧ ମଲ୍ଲୀ କୁମୁଦ । ଦିଅନ୍ତି
ଭ୍ରମରଗଣକୁମୁଦ । ଏମନ୍ତ ସୁଖ ଶରଦର ଦେଖି । ହରଷ
ହୋଇଲେ କମଳଆଖି । ଗୋପୀମାନେ ପୂଜା କର ମୁରାରି । ମାଗି-
ଅଛନ୍ତି ମନେ ବର କରି । କହିବା ପୂର୍ଣ୍ଣ ତାଙ୍କୁ ଅଭିରତ । କଟପା
ଅଟନ୍ତି ଗୋପଯୁବତୀ । କେହି ଆମ୍ଭର ନ ଛୁଇଁବେ ଜଳ । ଜଳକ
ନଷ୍ଟ ଇହବ କୂଳ । ଗୋପାଳମାନଙ୍କୁ ପଳାଇଦେଇ । ନ ଶୁଣି
ଗୋପୀମାନେ ଗଲେ ଧାଇଁ । ମୃଣାଳସୂତାରେ ଗଜକ ରହେ ।
କଳିକପାଳ ବାଲବକ ସହେ । ମୂଳମୂଳରେ ଭ ଅଚଳ ଟଳେ ।

ପବନ ଥରବ କର କମଳେ । ଏକ ଗୋପାଳ ଯେ ବଡ଼ ଦାରୁଣ ।
ଛାଡ଼ା ନାଗ୍ରା କଇ ଥର ଅପଣ । ମାଡ଼ ମାଇ ନଜ ଘରକୁ ନେଲା ।
କବାଟ ବନ୍ଦ ଦୁଆର ଜଗିଲା । ଶ୍ରୀକୃଷ୍ଣଙ୍କମୁଖୁ ଯାଇ ନ ପାରେ ।
ବନ୍ଧକଲେ କାନଇ ଗୋପଗୁଆଳୀ । ସଙ୍ଗ ଯୁବତୀ ଛାଡଗଲେ
ମଢେ । କୃଷ୍ଣଙ୍କୁ ଭେଟ ପାଇବେ ଭୁଇଛେ । ଅଭାଗ୍ୟବନ୍ତ ମୋହ-
ଠାରୁ ନାହିଁ । ଲାବଣ୍ୟମୂରତି ଦେଖିବ କାହିଁ । ହା ହା ହା
କୃଷ୍ଣ କମଳନୟନ । ଏମନ୍ତେ ବୋଲି ଛେଡ଼ିଲା ଜୀବନ । ଗୋପି-
ମାନଙ୍କର ଜ ଯାନ୍ତି ଅଗ । ସାଯୁଜ୍ୟ ମୂରତି ଲଭିଲା ବେଗ ।
ନକଟେ ଗୋପକାମିନୀକ ଦେଖି । ମୁରାରି ମୁରଲୀମୁଖ ଉପେକ୍ଷି ।
କହନ୍ତି ମଧୁର କୋମଳବାଣୀ । ଶୁଣଗୋ ସକଳ ଗୋପତରୁଣୀ ।
ଏକେତ ରଜନୀ ନୁକେ ଏ ବନ । ଏଥିକୁ କେ ଇ କଲ ଗମନ ।
ପତ ସୁତ ବନ୍ଧୁବାନ୍ଧବ ଛେଡ । ଅଇଲ ପରପୁରୁଷକୁ ଦେଖି ।
ଯୁବତୀମାନଙ୍କର ମୂଳଗତି । ହରତା କରତା ଭରତା ପତି । ଦେଖି-
ବାକୁ ଯେବେ ଅଇଲ ମଢେ । ମୋହ ସ୍ୱରୂପ ଦେଖିଲତ ନେତ୍ରେ ।
ସଦନକୁ ବେଗେ ବାହୁଡ଼ି ଯାଅ । ନିଜପତିଙ୍କି ସେବା କରୁଥାଅ ।
ଏମନ୍ତ କୃଷ୍ଣର ବଚନ ଶୁଣି । କାକୁସ୍ତେ ବୋଲନ୍ତି ଗୋପତରୁଣୀ ।
ଯାହା କହିଲ ସେ କଥା ପ୍ରମାଣ । କେବଳ ଅମ୍ଭଠାରୁ କହୁ
ଶୁଣ । ଧର୍ମବନ୍ଧ ବୋଲି ବୋଇଲ ଯାହା । ସଦକେ ନ କାର୍ଯ୍ୟ
ନ ପତ ନାହା । ତୁମ୍ଭେତ ସବୁର ଅନ୍ତ୍ୟାପୁରୁଷ । ତୁମ୍ଭଠାରେ ନ
ପରାପର ଦୋଷ । କେ ଅବା ଏ ଚର୍ମଲୋଚନ ବହି । ତୁମ୍ଭ ଲାବଣ୍ୟ
ମୂରତିକ ଚାହିଁ । ଅନଠାରେ ଅଛୁ ନ ଦେବ ଅଖି । ଅଖିକ
କେବଳ ମନ ଯେ ସାକ୍ଷୀ । ତୁମ୍ଭେ ମୋହନବଂଶୀ ବଜାଇବ । ଶୁଣିଲା
ଲୋକ କାମ ଦହିଇବ । ଅବେ ଶ୍ୟାମଘନବରନ ଶୁଣ । ଅଟ୍ଟଇ
କଥାଏ ଅଛୁ ପ୍ରମାଣ । ଅମୃତ କଳସ ଦରଶକାଳେ । ଯାହା
ବୋଲଛ ତାହା ଚେତ ବେଳେ । ସେ ଯେବେ ସ୍ପର୍ଶ ହୋଇବ

ବସ୍ତ୍ର । ମୁରଲୀ ସାକ୍ଷିତ ଅଛୁ ଭ୍ରମର । ପାଖକୁ ଅଣି ଗୋପାଳ ଯୁବତୀ । କରୁଛଅଛ ନପୁଂସକ ଗୀତ । ଜାଣିଥାଅଛି ଏକଥା ଜଗୃତ । ଆମ୍ଭର ଅସିବା କଥା ନଅଛ । ଦୂର କର ଅବା କୋଳରେ ଧର । ଏଣିକ ସବୁଅଯୁକ୍ତ ଭ୍ରମର । କୃଷ୍ଣ ବୋଲନ୍ତି ଗୋ ଗୋପଯୁବତୀ । ଜାଣିଲି ଭ୍ରମର ନିର୍ମଳମତି । ଏକୁଞ୍ଜ କାନନେ କରିବା କେଳ । ଶୁଣି ହରଷହେଲେ ବ୍ରଜବାଳୀ । ରଚିଲେ ବକଧକୁସୁମମାଳା । କୃଷ୍ଣଙ୍କୁ ମଣ୍ଡିଲେ ବରଜବାଳା । ଗୋପିଗଣ ସଙ୍ଗେ ଦେବ ଶ୍ରୀହରି । ଯମୁନାପୁଳିନ ବନେ ବିହରି । ଗୋପିଙ୍କେ ଗୋପାଳ ସ୍ୱରୂପ ଧରି । ଆଲିଙ୍ଗନ୍ତ · କଲେ ନିବଡ଼ କରି । ହରି କାହାକୁତ କୁଚ ମ-ର୍ଦ୍ଦନ । କାହାକୁ ଦେଲେ ମଧୁର ଚୁମ୍ବନ । କାହା ଦେହରେ ଗୃଳ ନଖ ମୂନ । କାହାର କୂଳ ଦେଲେ ଚନ୍ଦ୍ରସ୍ଥାନ । କେଉଁ ଗୋପି କଣ୍ଠେ ଲହିବା ଛଳେ । ଚୁମ୍ବନ ଦେଲେ କାହାର କପୋଳେ । ଚଉଷଠୀ କଳା ରତିପଣ୍ଡିତ । ଗୋପଯୁବତୀଙ୍କ ମନମଣ୍ଡିତ । ଏମ-ନ୍ତେ ଶ୍ରୀକୃଷ୍ଣ ରସ ଅରମ୍ଭି । ଗରବ କରନ୍ତି ଗୋପବଲ୍ଲଭୀ । ଆମ୍ଭ ସମ କେହି ନୋହି ଜଗତେ । ଆମ୍ଭେ ତପସ୍ୟା କରି ଥିଲୁଁ କେତେ । ହର ବ୍ରହ୍ମାଁ ଭେଟ ନ ପାନ୍ତି ଯାହା । ସେ ଏବେ ଆମ୍ଭର ହୋଇଛୁ ନାହା । ଏହରି ଚଉଦଭୁବନପତି । ଭାଲୁବ ଅନ୍ତର ଅନ୍ତର ଗତି । ବୃନ୍ଦାବନଉକରଥର ବଦନ । ଅନ୍ତର ହେଲେ ଜଗତ ମୋହନ । କୃଷ୍ଣକୁ ନ ଦେଖି ଗୋପ ତରୁଣୀ । ସମସ୍ତେ ମୋହେ ପଡ଼ିଲେ ଧରଣୀ । ପଛକେ ପୁଣି ପାଇଲେ ଚେତନ । ଉଠିଲେ ଗୋପତ-ରୁଣୀ ରତନ । ଜଳଦ ଅସି ଝିହାଡ଼ିଲା ଶଶୀ । ବନ ଗହନେ ଅନ୍ଧାର ପ୍ରକାଶି । ହେଜନ୍ତି ଶୋଜନ୍ତି ଛାଡ଼ନ୍ତି ଶ୍ୱାସ । ବୋଲନ୍ତି ଅସ ଅସ ପୀତବାସ । କାହୁତ ପଞ୍ଚଏ ଚନ୍ଦ୍ରମାମୁଖୀ । ପଚାରନ୍ତି ତରୁମାନଙ୍କୁ ଦେଖି । ·ଯଥାର୍ଥ କର ତରୁବର ସଖି । କାହିଁଅଛନ୍ତି ସରସିଜମୁଖୀ । ଗୋପିଏ ବୋଲନ୍ତି ଅବେ ଅବଧି । କାହିଁ ଅଛନ୍ତି ଆମ୍ଭ ଗୋପିକା-

୫ । କେଉଁ ଗୋପୀ ବୋଲେ ହେ ବଟ ତରୁ । ତୁମ୍ଭେ କି ଦେଖିଛ ମହମାମେରୁ । ସେ ବୋଲଇ ଅଗୋ ଶୁଣ ତୁଳସି । ତାହିଁ ଲକ୍ଷ୍ମୀ- ଛନ୍ତି କରୁଣାରାଶି । ଜାଣିଲୁଁ କୃଷ୍ଣର ସ୍ନେହାଗୀ ତୁହି । ସ୍ନେହରେ ତୋତେ ହୃଦେ ଛନ୍ତି ବହି । ସପତ୍ନୀପଣ କରୁଛ ଅଣି । ପଚ୍ଚରିଲେ ତୋତେ ନ କହୁ ବାଣୀ । କେଉଁ ଗୋପୀ ବୋଲେ ଚମ୍ପା ସୁମନା । ସକଳ ଗୁଣନିଧି ତୁହି ସିନା । ଆମ୍ଭର ପଣ ହୋଇଲୁ ଏଥର । ଦେଖି ଗଲେ ଯହୁଁ କୃଷ୍ଣ ଭ୍ରମର । କେଉଁ ଗୋପୀ ବୋଲେ ଶୁଣ ସୁ- ନାଗ । ନ୍ଯୋଗଭିତରେ ଥୋଇଅଛୁ ଦାଗ । ହେ କନିଅର ପୁନାଗ କପିଥ । ତୁମ୍ଭେ କ ଦେଖିଛ ମୁରଲୀଧର । ହେ ଲମ୍ବକୁଳ ହେବକୁଳ କୁଳ । ମନ୍ଦାର ବଉଳମାଳ ରସାଳ । ହେଉଲ ହେନ୍ତାଳ ସୁନ୍ଦର ଫୁନ୍ଦ । ତମ୍ବ କହ ତାହିଁ ଗଲେ ଗୋବିନ୍ଦ । କେହୁ ଗୋପୀ ବୋ- ଲେ ଅହେ କୁରଙ୍ଗ । ବଞ୍ଚେଦ ନାହିଁ ତୋ କୁରଙ୍ଗୀ ସଙ୍ଗ । ପଣ୍ଡୁ ହେଲେହେଁ ତୁ ସେନେହ ବନ୍ଧୁ । ଆମ୍ଭ ମୋହନ ପଗ୍‌ଏକ କୋନ୍ଥୁ । ତନ୍ଦନ ତରୁ ଯେ ଲବଙ୍ଗ ଲତା । ଦେଖି ବୋଲୁ ଛନ୍ତି ଏକ ବନି- ତା । ଦେଖ ଦେଖ ସଖି ଏହାଙ୍କ ପ୍ରୀତି । ଅଚେତ ହେଲେହେଁ ନ- ବଢ଼ି ଅତି । ତମାଳତରୁରେ ମୟୂର ଦେଖି । ଅଲଙ୍କାର ରତ୍ନ ଏକ ସୁନ୍ଦରୀ । ବୋଲଇ ଅହେ ନୟନମୋହନ । ଏକେତ ନିଶା ଏ ହୃକେ ଗହନ । ଆମ୍ଭକୁ ଛାଡ଼ି ଯାଇଅଛ କାହିଁ । ନ ଦେଖିଲେ ପ୍ରାଣ ରହିବ ନାହିଁ । ଏରୂପେ ବୃନ୍ଦାବନେ ଗୋପିକୁଳ । କୃଷ୍ଣକୁ ନ ଦେଖି ଅତି ବିକଳ । ବୋଇଲେ ନୃସିଂହ ଭ୍ରମରବର । ସେ ଗୋ ପିକାଥ ସବୁ ପ୍ରଚାରର ।

## ଅଷ୍ଟମ ବୋଲ୍ ।

---

ଏହିରୂପେ ଗୋପୀ ହୋଇ ଏକମନା । ଅନ ନ ଜାଣନ୍ତି ଅନ୍ତ କୃଷ୍ଣବିନା । କୃଷ୍ଣ ସ୍ଵରୂପ ଭାବନା କରି କାଇ । ଏହେ ଏହେ ବଦ୍ଧବର୍ଣ୍ଣ

ଅମ୍ଭେ ହରି । ଏକ ଗୋପିକାସ୍ତନେ ଦେଇ ମୁଖ । ତାକୁ ପଚାରି
ଦେଇ ବୋଲଇ ଦେଖ । ମୋତେ ଯଶୋଦାନନ୍ଦନ ବୋଲି
ଜାଣ । କ୍ଷୀର ସଙ୍ଗେ ଶୋଷିଲି ପୁତନା ପ୍ରାଣ । କେହୁଁ ଗୋପୀ
କାହାପାଦେ ଛନ୍ଦି ପାଦ । ବୋଲେ ଦେଖ ମୁ ନଷ୍ଟଏ ଅଘବକ ।
ଆଜ ଶକଟାସୁରକୁ କଲି ଚୂର । ସବୁ ଗୋପିଏ ମୋତେ ଲୋ
ସେବା କର । ଏକ ଗୋପୀ କାହାର ଚରଣ ଧରି । ବୋଲେ ପ-
ଳାଇଲି ବସ୍ତ୍ରାସୁର ମାରି । କେଉଁ ଗୋପୀ ତରୁଡାଳ କରେ ଧରି ।
ମନ୍ଦ ମନ୍ଦ ହସି ବୋଲେ ମୁହିଁ ହରି । ଦେଖ ଦେଖ ମୁ ଟାଳିଲି କ-
ଳାସୁର । ତୁମ୍ଭେ ସମସ୍ତେ ଆନ କାହାକୁ ଡର । ଗୋପୀ କଟିରେ ବସି
ଏକ ଗୋପନାରୀ । ବୋଲୁଅଛି ମୁ ବୃନ୍ଦାବନବାସୀ । କେହୁ
ବୋଲଇ ମୁହିଁ ଲୋ ବ୍ରହ୍ମଋଷି । ଦେଖ ଖେଳଇ ନଦୀ ପଙ୍କରେ
ବସି । ଏକ ଗୋପୀ ପାଦକୁଚି ଉଭା ହୋଇ । ତରୁଡାଳରେ ତା-
ହାର ମୁଖ ଦେଇ । ବୋଲେ ଦେଖ ଲୋ ମୁହିଁ ଯଶୋଦାସୁତ । ଶୁଣ
ଶୁଣ ମଧୁର ମୁରଲୀଗୀତ । କେହୁ ଏକ ଗୋପୀ କନ୍ଧେ ଭୁଜଦେଇ ।
ଶ୍ରୀକୃଷ୍ଣ ପ୍ରାୟେ ସଖୀରେ ନାଚ ଯାଇ । ବାମ କରେ ବାସ ଟେକି ଏକ
ନାରୀ । ବୋଲେ ଟେକିଅଛି ଗୋବର୍ଦ୍ଧନ ଗିରି । ଆସ ସମସ୍ତେ
ମୋତେ ଶରଣ ପଶ । ଇନ୍ଦ୍ରଙ୍କର ତୁମ୍ଭଙ୍କୁ କରିବ ନାଶ । ଏକଗୋପୀ
କାହାରକନ୍ଧରେ ବସି । ବୋଲେ ମୁହିଁ ନଷ୍ଟଯୌ କରୁଣାସଖି । ମୋର
ମହିମା କାଳୀୟ ଜାଣେ ନାହିଁ । ବେଗେ ଏଠାରୁ ପଳାଇଯାଅ ତୁହି ।
ଏକ ଗୋପୀ ବୋଲେ ମୁହିଁ ଭଗବାନ । ଆଜ କରିବ ବନ ଅନଳ
ପାନ । ତୁମ୍ଭେ ସମସ୍ତେ ବେନି ନୟନ ବୁଜ । ଧ୍ୟାନ କରି ମୋ ରୂପ
ନୟନେ ଦେଖ । ଏକ ଗୋପୀଏଁ ବୃକ୍ଷରୁ ଖୁଆ କରି । ଦଧିମନ୍ଥନ
ଚରିଇ ଅନୁସରି । ଏକ ଗୋପୀ ବୋଲଇ ମୁଁ ଭଗବାନ । ବେଗେ
ଜନନୀ ତୁ ଦଅ କ୍ଷୀରପାନ । ତାହା କର କରେ ଧରି ଏକଗୋପୀ ।
ଛଟ ଉଷାଇ ତାକୁ ବୋଲଇ କୋପି । ମୋର ଦଧି ଦୁଧ ସବୁ ନାଶ

କରୁ । ଅଜ ଜାଣିମା କେ ତୋତେ ରକ୍ଷା କରୁ । ଏହିରୂପେ କୃଷ୍ଣ
ପ୍ରାପ୍ତି ବ୍ରଜନାରୀ । ବୃନ୍ଦାବନେ ବୁଲନ୍ତି ଖୋଜନ୍ତି ହରି । କେତୁ
ଦୂରେ କୃଷ୍ଣପାଦ ଚିହ୍ନ ଦେଖି । ଅଷ୍ଟାଦଶ ଲକ୍ଷଣ ହୋଇଛି ଲେଖି ।
ଏକ ଗୋପୀ ବୋଲଇ ଗୋ ଦେଖ ମିତ । କୃଷ୍ଣ କମଳଚରଣ ଚିହ୍ନ
ଏତ । ଯେଉଁ ଗୋପୀକି ନେଇଛି ପଦ୍ମମୁଖ । ତାର ଚରଣ ଚିହ୍ନ
ପଡ଼ିଛି ଦେଖ । ତେବେ ତପ କରଛି ସେ ଗୋପନାରୀ । ଦେଖ
କୃଷ୍ଣଙ୍କୁ ନେଇଛି ଏକା କରି । ଗୋପୀ ଖୋଜନ୍ତି ସେ ପାଦ ଚିହ୍ନ
ସ୍ନେହିଁ । ଘାସଗହନେ ପୁଣି ଦେଖିଲେ ନାହିଁ । ପୁଣି କେତେ ଦୂରେ
କୃଷ୍ଣପାଦ ସ୍ନେହିଁ । ତହିଁ ଦେଖିଲେ ଗୋପୀ ଚରଣ ନାହିଁ । ଏକ
ଗୋପୀ ଅନୁମାନ କରି କହି । କୃଷ୍ଣ ଏଠାରୁ ତାଙ୍କୁ ନେଇଛି ବହି ।
ପୁଣି କୃଷ୍ଣପାଦଅଗ୍ର ଚିହ୍ନ ଦେଖି । ହେଜଣ କହଇ ଏକ ଚନ୍ଦ୍ରମୁଖୀ ।
ଯେଉଁ ଗୋପୀକି ନେଇଛି ବନମାଳୀ । ତାକୁ ଏଠାରୁ ଫୁଲ ଦେଇଛି
ତୋଳି । ଫୁଲ ତୋଳିବାକୁ ହସ୍ତ ନ ପାଇଲା । ତେଣୁ ଚରଣ
ଅଗ୍ରରେ ଉଭା ହେଲା । କୃଷ୍ଣପାଦପଦ୍ମ ଚିହ୍ନ ଅନୁସରି । ବନେ ବହୁତ
ଖୋଜନ୍ତି ବ୍ରଜନାରୀ । ଯେଉଁ କାମିନୀକି ହରି ନେଲେ ହରି ।
ସେ ଯେ ମନରେ ଅତି ଗର୍ବ କରି । ମୁଁ ଯେ ସବୁ ଯୁବତିମାନଙ୍କ
ରତ୍ନ । ଏହା ଜାଣି କୃଷ୍ଣ ମୋତେ କଲେ ଯତ୍ନ । ଏହା ଜାଣି ବର୍ଜିଲେ
ପୀତାମ୍ବର । ଅଛି ଗରବଗଞ୍ଜନବାନା ମୋର । କୃଷ୍ଣଅଙ୍କରେ ଗୋପୀ
କହଇ ବାଣୀ । ଅହେ ରସିକନାଗର ଶିରୋମଣି । ୪୦ । ପଥଶ୍ରମେ
ତନୁ ଅସକତ ଯେନ । ଆଉ ଚଳଇ ନାହିଁ ଚରଣ ବେନି । ମୋ-
ହଠାରେ ଯେମନ୍ତ ସେନେହ କରି । ମୋତେ କନ୍ଧେ ବହିନିଅ ଝଟ
ହରି । ଗୋପୀ ବାଣୀ ଶୁଣି ମଦନମନ ହସି । ଅସ ଅସ ବୋଲି ବା-
ଳକୁଦେ ବସି । ଗୋପୀ ଉଠର ଲେଖ ପର୍ଯ୍ୟଙ୍କ ମଣି । କୃଷ୍ଣ
ଶିରେ ନେଇ ଦେଲା ପାଦ ବେନି । ପାଦ କନ୍ଧରେ ଦେବା ସମସ୍ତ
ଜାଣି । ଅନ୍ତର୍ଦ୍ଧାନ ହେଲେ ଛନକିଶୋରମଣି । ମୋହେଁ ମସ୍ତକେ ଟଳ

ପଡ଼ିଲ ବାଳା । ଅଭିଶୀଭଟତ୍ରରେ ମଢ଼ଲେ ଜ୍ଞାନ । ବୋଲେ
ଅସ ହେ ଶ୍ୟାମସୁନ୍ଦର ହରି । କାହିଁ ଗଲ ବନେ ମୋତେ ଅନୁସରି ।
ମହାଅନ୍ଧାରେ ପଥ ଦଶଇ ନାହିଁ । ଘୋରକାନନେ ପଶେ ଗଲୁ
କାହିଁ । ଦୁଇକୂଳରେ ମୋତେ ନ ଦେଲ ଠାବ । ମଝିସମୁଦ୍ରେ
ବୁଡ଼ାଇ ଦେଲ ନାବ । ବ୍ୟାଘ୍ର ଭଲ୍ଲୁକପର ଏ ବନଘୋର । ଅଛ
କଣ୍ଟେ ମୋ କାଳ ପୂରିଲା ମୋର । ମୁଁ ଅପରାଧ କର ନାହିଁ କିଛି ।
ତୋର ହୃଦରେ ଏତେ କପଟ ଅଛି । ସ୍ତ୍ରୀବଧଭୟାରୁ ପାପ ତୋ
ନାହିଁ ଡରେ । ଜାଣେ ନାହିଁ କ ପାପ କରିଛ ଯେତେ । ଧାଇଁ
ହୋଇ ପୂତନା ମିଳିଲା ଅସି । ସ୍ତନପାନ ଚଉ ପ୍ରାଣ ନେଲୁ ଶୋଷି ।
ଅମ୍ଭ କୁଚରେ ମୁଖ ଦେଇଛ ଯେବେ । ଆମ୍ଭ ପ୍ରାଣ କ ଅଛି ରଖିବୁ
ଏବେ । ଛଣା ବକା ବଣା ଅର୍ଦା ଅଦ ଜାଉ । ମାର ଏହାଙ୍କୁ ଅହାବ
ଅଛୁ ହରି । ଭୂଛସ୍ବରେ ଏମନ୍ତ ବେଦନ ଶୁଣି । ଗୋପୀସମୂହ ମିଳ
ପୂଛନ୍ତି ବାଣୀ । ଅଗୋ ସଖି ତୋ ସେନେହ କୃଷ୍ଣ କାହିଁ । ଧୈର୍ଯ୍ୟ
ରଖିକୁ ତୋର ଲୋଭକ ଗୃହିଁ । ଗୋପୀ ବୋଲଇ ସେ କୃଷ୍ଣ ଭାଙ୍ଗ
ମଛ । ବାସଆଗେ ମିଳଇ କୁସୁମବନ । ରସତୃମ୍ବିକା ଯାଏ ମଧୁରବନ୍ଦେ ।
ସୁସ୍ନେଗ କଲେ ଅଉ ଦେହ ଟ୍ରୋହେ । ତନ୍ତୁ ଚଳଲେ ସକଳ ବ୍ରଜ-
ବାଳୀ । କୁଞ୍ଜବାଳିକ ଖୋଜନ୍ତି ବନମାଳୀ ।୬୦। ଉହିଁ ଭମମଯୁର ଘ-
ମାଳବନ । ଗଗନ ଭର ହୋଇଛି ସନପାନ । ମହାଅନ୍ଧକାର ନପାଉ
ଲେପଶି । ଡରେଁ ଯମୁନା କୂଳେ ମିଳଲେ ଅସି । ସେହଥାନେ ସକଳେ
ଅଲୁଲେବସି । କରକମଳ କୁଣ୍ଡଳ କରେଇପି । କୃଷ୍ଣ ମୁଖଚନ୍ଦ୍ରମା
ଦେଖାଅଛନା । ଅମ୍ଭ କାମଭମନାଶାନ୍ତୁ ଏ ସିନା । ମନଚକୋର ଅଭ
ଅନନ୍ଦ ହେଉ । ନେତ୍ରକୁମୁଦକୁ ମୁଦ ବେଗେଦେଉ । ତୁମ୍ଭ ବନୁଲ
ଢଳେଢଳାଣୁ ଅନ । କର୍ପା କରୁଅଛୁ ଅଣ ଅବଧାନ । ତୁମ୍ଭେ ବସାଇ-
ଛି ଯେବେ ଯାଅବନ । ମହା ବନକ ହୁଅଇ ଅମ୍ଭମନ । ଅତିକୋମଳ
କମଳ ପାଦବେଦ । ତ୍ରିକୁ ଆଉ କଣ୍ଟକ ବନବାଦେନ । ସନ୍ଧ୍ୟାସମସ୍ତେ

ଗୋପସୁତଙ୍କ ମେଳେ । ଅଗେ ବସ୍ତ୍ରମାନ ଅସୁଆନ୍ତି ପଲେ । ହୋଇଥା-
ନ୍ତି ମୁରଲି ଅଧରେ ରଙ୍ଗ । ଗୋରଜଧୂଳିରେ ଶୋଭାଦିଶଇ ଅଙ୍ଗ । ସେ-
ହିରୂପରେ ପଡ଼ିଲେ ନେତ୍ରଯୁଗ । କେଉଁ ସତୀର ବ୍ରତ ନୋହିବ ଭଙ୍ଗ ।
ସେତେବେଳେ ଅମ୍ଭେମାନେ ପ୍ରାଣପାଉ । ତୁମ୍ଭ ଲାବଣ୍ୟ ମୁଖଚନ୍ଦ୍ରକୁଁ
ଥାଉଁ । ନିନ୍ଦାକରୁ ଏପଲକ ପଡ଼ିବାର । ବୋଲୁ ଅନ୍ତର କରୁଛୁ
ଏହାଙ୍କର । ଦେଖିବାକୁ ଯେଉଁ ଅଙ୍ଗେ ଦେଉଅଛି । ସେହିଅଙ୍ଗରେ
ପଡ଼ିଅଛି ଲାଖି । ଦେଖୁଁ ଜାନ୍ତୁଁ ହେଲେ ସବୁ ହାସ ଶୋଭା । ତେଣୁ
କର ନୟନ ହୋଇଛି ଲୋଭା । ଅହେ ଦାସବତ୍ସଳ ଜଗତବନ୍ଧୁ ।
ଅଶରଣ ଶରଣ କରୁଣାସିନ୍ଧୁ । ତୁମ୍ଭ ଚରଣ କମଳଙ୍କର ମୂଳ । ତେଜି
ଆଇଲୁଁ ବନ୍ଧୁ ବାନ୍ଧବ କୁଳ । ତହିଁ ପ୍ରତିଫଳହିଁ ପାଇଲୁ ଏବେ । ସୋ-
ର ଜାଳରେ ନିବାସିଗଲୁ ଯେବେ । କାମଅନଳ ଅମ୍ଭ ହୃଦରେ ଜାଳ ।
ଦେଖଦେଖ ସଖୀର ଗଲାଟି ଢଳ । ହାଇଦିଅ ମୁଖୁଁ ସୁଧାରସ ଅଣି ।
ଅଜଠାରୁ ଏ ଗୋପିଙ୍କି ନ ଅ କଣି । ମନ ଜୀବନ କୃଷ୍ଣଙ୍କୁ ସମର୍ପିଲେ ।
ଗୋପୀନଷ୍ଟେ ମରଣ ବରଣ କଲେ । ଗୋପୀମାନଙ୍କ ଦୃଢ ଭକତି
ଜାଣି । ମଧ୍ୟେ ବଜାୟୁ କଲେ ମୁରଲିପାଣି । ଦେଖି ଗୋପୀଙ୍କ ମନ-
ହୋଇଲା ଯାହା । କବିସ୍ତର ତ କହିଁ ପାରିବ ତାହା । ଜନ୍ମ ଅନ୍ଧ ପା-
ଇଲା କି ଚକ୍ଷୁଦାନ । ଦରିଦ୍ର ପାଇଲା କି ଅବା ଧନ । ଅପୁତ୍ରିକର
ପୁତ୍ରହୋଇଲା ଅବା । ମୃତପିଣ୍ଡରେ ପ୍ରାଣ ପ୍ରବେଶ ଅବା । ଛଦ୍ମଗୁରୁ
ଉପଦେଶ ଶିଷ୍ୟ ପାଇ । ବ୍ରହ୍ମ ଆନନ୍ଦ ଅନୁଭବ ହୋଇ । ଏହି
ପାନ୍ତରେ ବେଢ଼ିଲେ ବ୍ରଜନାରୀ । ମଣିଭିତେ କି ସିବେ ଅବା ବନମାଳୀ ।
ଭୁଜବଲ୍ଲରେକେ କରଇ ଅଲିଙ୍ଗନ । କେହୁ ଦିଅଇ ମଧୁର ଚୁମ୍ବନ ।
କେଉଁ ଗୋପୀ କୃଷ୍ଣଙ୍କର କନ୍ଧେ ଦେଇ । କେହୁ ଗୋପୀ ତାମ୍ବୂଳ ଦିଅଇ
ନେଇ । କେଉଁ ଗୋପୀ ପଦ୍ମପ ଧରିଛି କରେ । କେଉଁ ଗୋପୀ ପା-
ଦପଦ୍ମ ସେବାକରେ । ଶବଦ ପଞ୍ଚ ଭ୍ରମର ଅଳିମାନ । ଗୋପିମାନେ
ଅନ୍ତିକ୍ରାନ୍ତ ଉଦ୍ଭଟ । ମହାବଗନ୍ଧେ କେଉଁ କୁଟିଳକେଶୀ । କୃଷ୍ଣପା-

ଶକ୍ତ ପାଇବ • ନାହିଁ ପଶି । ମନନମୂଳ ଦଶଇନ୍ଦ୍ରିୟରେ ଦେଇ । ଧ୍ୟାନେ
ରହିଲା ଯୋଗିପରାଏ ହୋଇ । ଗୋପିମାନଙ୍କ ଭକ୍ତି ଉଦଂସ୍ତ ହୁଏ ।
ତନୁପୁଲକେ କଦମ୍ବପୁଷ୍ପପ୍ରାଏ । ଏକେ ଏକେ କହନ୍ତି ଦେଖୁ ପାଧାରିଂ ।
ଯାହାକହନ୍ତି ତା ଅବଧାରିକର । ଯେଉଁ ଲୋକ କଷ୍ଟସୁ ଯାହାକୁ ଭ-
ଜେ । ଏକକଥା ସେ କପାଁ ତାହାକୁ ଭେଜେ । କୃଷ୍ଣବୋଲନ୍ତି ଶୁଣଗୋ
ଭଗବତ । ପରସ୍ପରେ ହିଙ୍ଗଲେ ଜବଡ଼ପ୍ରୀତି । ଭାବ ନଦେଖି ଭଜଇ
ଯେଉଁ ଜନ । ତାହାଠାରୁ ବଡ଼ଦୋଷ ନାହିଁ ଆନ । ମୋତେ ଭଜିଲ
ମୋର ନଦେଖି ଭାବ । ତୁମ୍ଭ ନିର୍ମଳ ଭକ୍ତି ମୁଁ କଲଠାବ । ମୋର ମାୟା
ଶାଙ୍କୋଳବାଟିନ୍ତ ସଖି । ଭାବଧନେ ମେ.ତେ କଣିଅଛ ରଖି ।
ବୋଧପାଇ ଗୋପିଏ ହୋଇଲେ ତୋଷ । କୃଷ୍ଣ ବୋଲନ୍ତି ରସବଶବା
ଅସ । ହଇ ଗୋପିକେ ଗୋପାଳରୂପଧରି । ରାସମଣ୍ଡଳରେ କରେକ-
ରଧରି । ନୃତ୍ୟରସେ ଅଶକ୍ତ କେଉଁ ବାଳୀ । ବୋଳନ୍ତର ଶ୍ରୀକୃଷ୍ଣ
ତାହାକୁ ତୋଳ । କେଉଁ ତରୁଣୀ ଅତିଆନନ୍ଦଭରେ । କୃଷ୍ଣଭୁଜ ସୁଗନ୍ଧ
ଆଘ୍ରାଣକରେ । ନୃତ୍ୟବରେ କେହ୍ନ ଗୋପୀ ହେଲା ମୋହ । କରେ
ଶ୍ରୀକୃଷ୍ଣ ତୋଳ ତାହାର ଦେହା । ପାଦ ପାଦପଦ୍ମେନ୍ଦ୍ର ପାତବାସ ।
ନିଜଶ୍ରୀମୁଖ ଦେଲେ ତାମ୍ବୁଳରସ । ତାହା ଉଚ୍ଛ କୁଚେ ହରିକର ଦେ-
ଇ । କାହା ଅଧରରେ ଚୁମ୍ବ ଦେଲେ ନେଇ । ଏବେ କାଳିନ୍ଦିକୂଳ
ଶ୍ରୀବୃନ୍ଦାବନ । ଚନ୍ଦ୍ରମଣ୍ଡଳ ଦଶଇ ଶୋଭାବନ । ତହିଁ କାଗର କାଶ୍ମୀ-
ରଙ୍କ ବାସ । ଶୋଭାସ୍ଥାନରେ ଅଣିଦେବାବସ । ଅପସରା ନାଚନ୍ତି
ଗଗନେରଙ୍ଗେ । ପୁଷ୍ପବୃଷ୍ଟି କରନ୍ତି ଶ୍ରୀକୃଷ୍ଣଅଙ୍ଗେ । କୁଞ୍ଜସଦନ ନବ
ପଲ୍ଲବ ଶେଯ । ଝଙ୍କଉପନ୍ଥି ତହିଁ କୁସୁମରଜ । ମନ୍ଦ ମନ୍ଦ ଶୀତଳ
ପବନ ବହି । ଗୋପୀ ଗୋପାଳ କେଳ କରନ୍ତି ତହିଁ । ତଜ୍ଞପଠେ
କକେ କ୍ରୀଡ଼ା ରସ ଯେତେ । କାମ ଶାସ୍ତ୍ରହିଁ ତାହା କହିବା କେତେ ।
ରତିଶେଷରେ ନିଜବସନ ପିନ୍ଧ । ଗୋପୀ ଶ୍ରମ ଶାନ୍ତ କଲେ
କୃପାନ୍ଧି । ଗୋପଯୁବତୀ ସଙ୍ଗରେ ବନମାଳୀ । ଯମୁନାରେ ପଶ କ-

ଲେ ଜଳକେଳ । କବାହରିଣିଗଣରେ ଯୁଥପଢ । କ୍ରୀଡ଼ା କରନ୍ତ ଅଛ ଅଂଜନମଛ । ନୂମ୍ଭେ କମଳକୋଳରେ ମତ୍ତଭୃଙ୍ଗ । ରସ ଲୋଗରେ କବା କରଇ ରଙ୍ଗ । ଅପସରାଏ ଦବ୍ୟ ଅସନେ ବସି । ପୁଷ୍ପବୃଷ୍ଟି କରନ୍ତ ଅକାଶେ ଅସି । ଗୋପିମାନଙ୍କୁ ଯେନ ଶାରଙ୍ଗଧର । କଶିଶେଷେ ପ୍ରବେଶ ଯେ ଯାଦବ ପୁର । ମାୟାସାଗର ମାୟା ଯେ କଲେଟହିଁ । କେହ୍ନ ତାହାର କଥା ଜାଣିଲେନାହିଁ । କଜ କାନ୍ତିଙ୍କୁ ଦେଖି ଗୋପାଳମାନେ । ଅଛ ଅଜଜଭର ହୋଇଲେ ମନେ । ଦ-ନେ ରାମ କୃଷ୍ଣ ନନ୍ଦ ଗୋପସୂତେ । ଶଗଡରେ ବସି ଗଲେ ଘୋଷ ଚନ୍ତ୍ରେ । ଯାଇ ଅମ୍ବିକା ବନେ ପ୍ରବେଶ ହେଲେ । ସଞ୍ଜୁଗାଜଙ୍ଗଳେ ସ୍ନାନକଲେ । ନନ୍ଦ ପୂଜାକଲେ ଯେନ ଉପହାର । ହର ଗଉରୀଙ୍କି କଲେ ନମସ୍କାର । ନିଶି ସମୟେ ଅମ୍ବିକା ବନେରହି । ଅସି ବେଢ଼ି-ଲେ ନନ୍ଦଙ୍କୁ ମହାଅହି । ନନ୍ଦବୋଲନ୍ତି ହେ କୃଷ୍ଣ କୃଷ୍ଣ ରାମ । ତୁମ୍ଭେ ଆଉନ୍ତି ସର୍ପ ଶିଳ୍ପହୁ ଦେଖ । ଶୁଣି ଅକାଳ ଯେନ ପିଟିଲେ ରାମ । ପାଦ ପ୍ରହାର କଲେ ଯେ ଘନଶ୍ୟାମ । ସୁଦର୍ଶନ ଗନ୍ଧର୍ବ ଯେ ଯେନ ଶାପ । ଅବନୀରେ ଅସି ସେ ହୋଇଲେ ସାପ । କୃଷ୍ଣ ପରଶେ ନଜ ସ୍ୱରୂପହେଲା । ସ୍ତୁତିକରି ତାହାର ପୁରକୁ ଗଲା । ନନ୍ଦଆଦ ଗୋପା-ଳେ ରଜନୀ ଶେଷେ । ଗୋପପୁରେ ପ୍ରବେଶ ପରମ ତୋଷେ । ଏଅନ୍ତରେ ଯମୁନାତଟବନେ । ରାମ ଗୋବନ୍ଦ ଯାଇ ମିଳଲେ ଦନେ । ମନ୍ଦ ମନ୍ଦ ମଧୁର ମଧୁର ହସି । ଅଙ୍ଗନାଥଉ ସଙ୍ଗେ ରଙ୍ଗେ ସବେ ବସି । ଗୋପିମୋହନ ମୁରଲୀଧ୍ୱନିଶୁଣି । ଏକେ ଏକେ ହୁଦେ କୃଷ୍ଣ ଭାବ ଯୋଜ । ରାମ କୃଷ୍ଣ ଛମୁରେ ଏମନ୍ତକାଳେ । ଅସି ଶଙ୍ଖଚୂଡ଼ ମହା ସର୍ପ ମିଳେ । ଦେଖି ରାମ କୃଷ୍ଣ ଶାଇଛନ୍ତୁ ଥର । ଗୋଡାଇଲେ ଉରଗଙ୍କୁ ଅନୁସର । ଡରେ ପଳାଇ ପଳାଇ ଶଙ୍ଖ-ଚୂଡ଼ । କୃଷ୍ଣ ଗୋଡାଇ ପିଟିଲେ ନେଇ ଶାଳ । ଶାଳସାତରେ ମଲା ଉରଗମଣି । କୃଷ୍ଣ ମଥାରୁ ଟାଣି ଆଣିଲେ ମଣି । ନେଇ ଦେହଣୀ

ଭଜନ ଷୋଳେ ଦେଲେ । ନାଗପୁରକୁ କରି ବିଜୟକଲେ । ନର-
ସିଂହ ଭ୍ରମରବରର ମଢ । ଅନ୍ତକ୍ଷଣେ ଚଳନ୍ତେ ନୀଳାଚଳପର୍ଣ୍ଣ ।

## ନବମ ବୋଲି ।

ଶୁଣ ହେ ସୁଜନେ ଏଥି ଉତ୍ତରେ । ଦିନେ କଂସର ଆଜ୍ଞା ଘେନି ଶି-
ରେ । ଷଣ୍ଢାସୁର ଆସି ମିଳିଲା ଗୋପେ । ଖୁରରେ ମହୀକି ଖୋଳଇ
କୋପେ । ପୁଣି ପୁଣି ମଳମୂତ୍ର କରଇ । ଶୃଙ୍ଗ ଦେଖାଇ ଲୋକ-
ଙ୍କୁ ଡରାଇ । ଗୋପିଗୋପାଳେ ଦେଖି ଅତି ଡରେ । କହନ୍ତି
ଆସିଛେ କୃଷ୍ଣ ଛାମୁରେ । ହେ କୃଷ୍ଣ ଏ ଷଣ୍ଢାସୁରକୁ ଦେଖ । କାଙ୍କ
ଗଳୁଁ ଏହାଠାରୁ ରଖ । ଶୁଣି ଶ୍ରୀକୃଷ୍ଣ ବାହାନାଦ କରି । ବୋଲନ୍ତି
ଆଜ ଯିବ ଯମପୁରୀ । ଅସୁର ଶୁଣି ଶ୍ରୀକୃଷ୍ଣ ଉତ୍ତର । କ୍ଷିପ୍ରଷଣେ ବଢ଼
ଗୋଡାଇଲା ଖର । ଅସୁରକୁ ଓଦା ବସନ ପରି । ଧରି ସିଂହବେଳ
ମୋଡଲେ ହରି । ଓପାଡିଲେ ସିଂହ ଗୋଟାଏ ଭାର । ଘୋର ଧ୍ୱନି-
କରି ମଲା ଅସୁର । ଗନ୍ଧର୍ବେ ଆସି ମିଳିଲେ ଗଗନେ । ପୁଷ୍ପବୃଷ୍ଟି କଲେ
ହରଷମନେ । ଏମନ୍ତେ ଦିନେ କଳପ୍ରିୟ ଋଷି । କଂସ ଆସନରେ
ମିଳଇ ଆସି । ଆଦରେ କଂସ କଲା ନମସ୍କାର । ଏଥାନ୍ତେ ମୁନି କହନ୍ତି
ଖବର । ବସୁଦେବର ଯେ ଦେବକୀକୁମର । ଗୋପରେ ଅଛନ୍ତି ନନ୍ଦ
ମନ୍ଦିର । ଗୋପପୁରେ ତାଙ୍କ ରଖି ଆସିଛୁ । ନନ୍ଦଦୁହିତାକୁ ତୋତେ
ଦେଇଛୁ । ତ୍ରିଦଶଏ ଯାଦବେ ଅଛନ୍ତି ଯେତେ । ଅପାର ତୋର
ବଇରୀ ନଷ୍ଟେ । ଏଥିକୁ ଚତୁରେ ବିଚାର କର । ନୋହିଲେ
ଅପାର ହେବଟି ତୋର ।୧୬। ଏମନ୍ତ ତାକୁ କହିଗଲେ ମୁନି । କଂସ
ସେକଥା ଦୃଢ଼ କରି ଘେନି । ଦେବକୀ ବସୁଦେବଙ୍କୁ ଅଣିଲା । ବନ୍ଦୀପ-
ରେ ରଖି ସାଙ୍କୋଳ ଦେଲା । ବିଶ୍ୱାସ କରି କହଇ କେଶୀକି । କୃଷ୍ଣକୁ
ଯମପୁରକୁ ପେଶିବ । ଯାଇକୁ ଯେବେ ତେବେ ଯାଅଦାରୁ ।
ତୋ ଘେନ ରହୁ ମୋ ସମ୍ପଦ ସବୁ । ମୁଷ୍ଟିକ ଚାଣୁର ମାଲକୁ କହି ।
ବୋଲଇ ସିଂହଦ୍ୱାରେ ଥିବ ରହି । ରାମକୃଷ୍ଣଙ୍କ ବିନାଶ କରିବ ।

ଏମୋର ଘୋର ସନ୍ତାପ ହରବ । କୁବଳୟା ଚଢ଼ିଥିବ ମାହୁନ୍ତ । ହସ୍ତୀ-
ଦନ୍ତେ ତାକୁ କରବ ହତ । ଏକାନ୍ତ ସ୍ଥାନେ ଅକ୍ରୂରକୁ ଆଣି । କର
ଧରି କହେ ମଧୁରବାଣୀ । ବେଗେ ଯାଅ ତୁମ୍ଭେ ଗୋପନଗର ।
ଅଛନ୍ତି ରାମକୃଷ୍ଣ ନନ୍ଦ ଘର । ବୋଲବ ଆଜ୍ଞା ଦେଇଛନ୍ତି ସ୍ୱୟେ ।
କହୁଛନ୍ତି ତୁମ୍ଭେ ନ କରବ ଭୟେ । ରଙ୍ଗସଭା ଯାତ୍ରା ଦେଖିବ ଆସ ।
ବହୁତ ହେବ ତୁମ୍ଭେ ପଉରସ । ଏମନ୍ତ କହ ତାଙ୍କୁ ଘେନ ଆସ ।
ସମସ୍ତେ ହୋଇ ମୋ ଶତ୍ରୁକୁ ନାଶ । ଏମନ୍ତେ ଅକ୍ରୂର ମେଲାଣି
ହୋଇ । ସଦନେ ପ୍ରବେଶ ହୋଇଲା ଯାଇଁ । କଂସଆଜ୍ଞା ଘେନ
କେଶୀ ଅସୁର । ଅଶ୍ୱରୂପେ ମିଳ ଗୋପନଗର । କୃଷ୍ଣଙ୍କୁ ଦେଖି
ଅବନୀ ଖୋଳିଲା । ଦେହକୁ ଚରଣେ ପ୍ରହାର କଲା । ବେନିଚରଣ
ତା ଧରି ବହଲ । ଫିଙ୍ଗି ଦେଲେ ତାକୁ ପଦ୍ମନୟନ । ଯୋଜନଥିବ
କର ମଧ୍ୟରେ ପଡ଼ି । ଅଛ ବଳଲେ ମଳ ମୁତ୍ର ଛାଡ଼ି । ପୁଣି ବେଗେ
ଉଠି କେଶୀ ଅସୁର । ଯାଇଁଲା ତୁଣ୍ଡ ତା କର ବସ୍ତାର । ଶ୍ରୀକୃଷ୍ଣ ଏମନ୍ତ
କରହ ତୁଣ୍ଡେ । ମନ୍ଥିଲେ କେଶୀପିଣ୍ଡ ବାହୁଦଣ୍ଡେ । ଏମନ୍ତେ ନାରଦ
ମଳଲେ ଅସି । ଦେଖି ପ୍ରଣାମ କଲେ କୃପାରାଶି । ନାରଦ କହନ୍ତି
ଅହେ ଗୋବିନ୍ଦ । ନାଶ କର ବେଗେ ଅସୁରବୃନ୍ଦ । କଂସ ଯେ
ଅପାର ବଳର ଚତ୍ରେ । ତୁମ୍ଭଙ୍କୁ ନେବାକୁ ପେଷିଛି ଦୂତେ । ତାହାକୁ
ତୁମ୍ଭେ ବହନ ସହାର । ଉଶ୍ୱାସ କର ଅବନୀର ଭର । ଏମନ୍ତ କହି
ମୁନି ଗଲେ ଚଳି । ଗାଈ ଗୋପାଳ ସଙ୍ଗେ ବନମାଳୀ । ପର୍ବତ
ଉପରେ କରନ୍ତି କେଳି । ଏମନ୍ତେ ବ୍ୟୋମାସୁର ଆସି ମିଳି । ଦେଖି
ଅସୁର ଗୋପାଳସ୍ୱରୂପେ । ପ୍ରବେଶ ହୋଇଲା କୃଷ୍ଣସମୀପେ ।
ଖେଳରେ ଗୋପାଳସୁତଙ୍କୁ ନେଇ । ଗିରିକନ୍ଦରଭିତରେ
ରଖଇ । ଦୁଆରେ ମୁଦି ଆବଇ ପଥର । ଏରୂପେ ନେଇ ଅନ୍ୟକୁ-
ଅର । ଜାଣି ଭଣ୍ଡି ଭାବ ଚପିଲେ ହରି । ଅସୁର ମଲା ନିଜରୂପ
ଧରି । ଗିରିକନ୍ଦରରୁ କରୁଣାକର । ଗୋପାଳମାନଙ୍କୁ କଲେ

ବାହାର । ଆଉ ଗୋପାଳଙ୍କ ସଙ୍ଗେ ମୁରାର । ପୁରକୁ ଗଲେ ବଂଶୀ ଧ୍ୱନି କରି । ଏମନ୍ତେ କଂସଆଜ୍ଞାରେ ଅକ୍ରୂର । ରଥେ ବସିଗଲେ ଗୋପନ୍ଦବର । ଆନନ୍ଦେ ମନେ କରଇ ବଡୁର । ଆଜ ସଫଳ ହେବ ଜନ୍ମ ମୋର । ପରମବ୍ରହ୍ମ ବ୍ରହ୍ମାଣ୍ଡଇଶ୍ୱର । କରିବ ତାଙ୍କୁ ନୟନ ଗୋଚର । ସେ ପୁଣି କୋଳ କରିବେ ସେକେବେ । ଶ୍ରୀଅଙ୍ଗ ଲାଗିବ ମୋହର ଦେହେ । ଏମନ୍ତେ ଗୋଷ୍ଠରେ ମିଳିଲେ ଯାଇ । କୃଷ୍ଣ ପଦ୍ମପାଦ ଚିହ୍ନ ଅନାଇ । ୫୬ । ତକ୍ଷଣେ ରଥରୁ ଓହ୍ଲାଇ-ପଡି । ଦଣ୍ଡବତ ହୋଇ ମହୀରେ ଗଡ଼ି । ମଥାରେ ନେଇ ଲଗା-ଇଲେ ରଜ । ବୋଲଇ କୃତାର୍ଥ ହୋଇଲି ଆଜ । ୫୪ । ଏମନ୍ତେ ପୁଣି ବସିଲେ ରଥରେ । ରାମକୃଷ୍ଣଙ୍କୁ ଦେଖି କେତେଦୂରେ । ରଥରୁ ଓହ୍ଲାଇଲେ ତତକ୍ଷଣ । ଜୟ ଜୟ ପ୍ରଭୁ ପଦ୍ମଇକ୍ଷଣ । ଦୁଷ୍ଟଦଳନ ସୁଜନ ତାରଣ । ଅରୂପ ରୂପ ଶ୍ରୀବତ୍ସଲାଞ୍ଛନ । ଏମନ୍ତ ବୋଲି ଦଣ୍ଡ-ବତ କଲ । ତଳରୁ ତୋଳି କୋଳକଲେ ହରି । ରାମହିଁ ପୁଣ କଲେ ଆଲିଙ୍ଗନ । କରଧରି ହରି ନେଲେ ସଦନ । ଆସନ ପାଦଆସନହିଁ ଦେଲେ । ପଞ୍ଚଅର୍ଘ୍ୟରେ ଦ୍ରବ୍ୟପୂଜା କଲେ । ଷଡ଼ରସରେ ଭୋ-ଜନ କରାଇ । ଶ୍ରୀରାମ ମୁଖବାସ ଦେଲେ ନେଇ । ରାମକୃଷ୍ଣ ନନ୍ଦ ଅକ୍ରୂର ଆସି । ଏକାନ୍ତ ସ୍ଥାନ ଆସନରେ ବସି । ନନ୍ଦ ବୋଲନ୍ତି ହେ ଅକ୍ରୂର ଶୁଣ । କକାର୍ଯ୍ୟେ ଆପଣ ଆସିଛ ପୁଣ । ଅକ୍ରୂର ବୋଲନ୍ତି କଂସ ନୃପତି । ଆମ୍ଭକୁ ତୁମ୍ଭଠାକୁ ପେଷିଛନ୍ତି । ରାମ କୃଷ୍ଣ ବେନି ମଥୁରା ଯିବେ । ରାଜାଙ୍କୁ ଦର୍ଶନ କରି ଆସିବେ । ରଙ୍ଗସଭା ରାଏ କରିଅଛନ୍ତି । ଅନେକ ଦେଶୁଁ ଲୋକେ ଆସିଛନ୍ତି । ନନ୍ଦ ବୋଲନ୍ତି ମୋ ବାଳକ ପୋଏ । କେମନ୍ତେ ଯିବେ ଏ କରିବେ ଭୟେ । ଶୁଣି ଅକ୍ରୂର କୋପ କରି କହି । ରାଜାଅମାନ୍ୟ ରାଜ୍ୟେ ନ ରହି । ଶ୍ରୀକୃଷ୍ଣ ବୋଲନ୍ତି ନୃପତିଆଜ୍ଞା । କେ ତାହା କରି ପାରିବ ଅବଜ୍ଞା । ଚାଲ ଆମ୍ଭେମାନେ ସମସ୍ତେ ଯିବା । ରାଜାଙ୍କୁ ଭେଟି ଲେଉଟି ଆସିବା ।

ସାମହିଁ ଭାବନା କଲେ ସିଉକାର । ନନ୍ଦକୁ ବୋଲନ୍ତି ଶାରଙ୍ଗଧର ।
ସ୍ବକଟେ ନେଇଯିବା ଉପହାର । ସଙ୍ଗତେ ଯିବେ ଗୋପାଳ କୁମର ।
କାଲି ପ୍ରଭାତରୁ ଯିବା ମଥୁରା । ଶୁଣି ଗୋପଲୋକେ କୋଇଲେ
ଘୋର । ଶ୍ରୀହରି ମଥୁରା ଗମନ ଶୁଣି । ବିକଳ ସକଳ ଗୋପତରୁ-
ଣୀ । ବୋଲନ୍ତି ଏବେ ଅମ୍ଭେ କ କରିବୁଁ । କୃଷ୍ଣବିଚ୍ଛେଦେ କ ପ୍ରାଣ
ଧରିବୁଁ । ଯାହାକୁ କ୍ଷଣେ ନପାରୁଁ ମୁରୁଛି । ସେ ଏବେ ଅନ୍ତର
ହୋଇ ଯାଉଛି । ଏକଥା ତୁମ୍ଭେ ନିଶ୍ଚେକରି ଜାଣ । କୃଷ୍ଣ ନ ଯାଉ
ଯିବ ଅମ୍ଭ ପ୍ରାଣ । ଏତେ ବୋଲି କରି ମଥାରେ ମାରି । ରୋଦନ
କଲେ ବେଧାତା ସୁମରି । ଅହେ ଦଇବ ତୁ ବଡ଼ ଦାରୁଣ । ଅମ୍ଭର
ପ୍ରୀତି ଭାଙ୍ଗୁଅଛୁ ପୁଣ । ଗଢ଼ିବାକୁ ପୁଣି ହୋଇଲୁ ଏହା । ତାହାକୁ
କେତେବେଳେ କରୁ ବାହା । ବିସ୍ମରିଲୁ କଥା କୁହଇ ପୁଣି । ମନେ
ନଶୁଣି କଥା ଗରୁ ଅଣି । ରାମ ଗୋବିନ୍ଦ ବିଜେ କଲେ ଯାଇ ।
ଆପଣେ ଅକ୍ରୁର ସାରଥୀ ହୋଇ । ନନ୍ଦ ଆଦିକରି ଗୋପାଳ ଯେତେ ।
ଶକଟେ ଯାଇ ବସିଲେ ତୁରିତେ । ଭାରମାନଙ୍କେ ଭରି ଉପହାର ।
ଏମନ୍ତେ ସମସ୍ତେ ହେଲେ ବାହାର । ହା ହା କୃଷ୍ଣ ବୋଲି ଗୋପିଏ
ଧାଇଁ । ରଥ ପଛେ ପଛେ ଗଲେ ଗୋଡ଼ାଇ । ବୋଲନ୍ତି
ଅହେ ପ୍ରାଣବନ୍ଧୁ ଶୁଣ । ସତେ ହେ ତୁମ୍ଭେ ଯାଉଅଛ ପୁଣ ।
ଅମ୍ଭମରଣକୁ କମଳମୁଖ । ଏଥି ଅଂଶରେ ଅଂଶେ ନାହିଁ ଦୁଃଖ ।
କେବଳ ଏଥକୁ ହେଉଛୁଁ ଦୁଃଖୀ । ତୁମ୍ଭଙ୍କୁ ହୃଦୟରେ ଅଛୁଁ ରଖି ।
ପୋଡିଯେ ଯାଉଅଛି ଏବେ ଦେହ । ଏଥକୁ ଉପାୟ କରିବୁଁ କହ ।
ମଥୁରାକୁ ତୁମ୍ଭେ ଯାଉଛ ରଙ୍ଗେ । ଅମ୍ଭ ପ୍ରାଣହିଁ ନେଇ ଯାଅ
ସଙ୍ଗେ । ଶ୍ରୀକୃଷ୍ଣ ଗୋପିଙ୍କ ହୃଦୟ ଜାଣି । ଏକ ଗୋପାଳକୁ କହନ୍ତି
ବାଣୀ । ଅମ୍ଭ ଅକ୍ଷାରୁ ଏହିଠାରୁ ରହ । ଗୋପିଙ୍କି ଯାଇଁ ତୁ
ଏମନ୍ତ କହ । ଯେବେ ଗୋ ମନକୁ ମନ ମିଳଛି । ଦୂରେ ଥିଲେ
ମହିଁ ନିକଟେ ଅଛି । ହୃଦୟରେ ତ ରଖିଅଛି ମୋତେ ।

ବଚ୍ଛେଦ ଅଶ୍ରୁ ହେଉଛି କେମନ୍ତେ ॥ ଛଥାପି ରଙ୍ଗସଭା ଯାତ୍ରା ବୃହିଁ ।
ଗୋପକୁ ପୁଣିତ ଅସିବ ମୁହିଁ ॥ ଗୋପିଏ ଶ୍ରୀକୃଷ୍ଣ ବାରତା ପାଇଁ ।
ରହିଲେ ପ୍ରାଣନଯୃକେ ପୁରାଇଁ ॥ ନ ଦଶିବା ଯାଏ ଅନାଇଁ ଥିଲେ ।
ନିଶ୍ୱାସ ପକାଇ ବାହୁଡ଼ି ଗଲେ । ଯମୁନା କୂଳେ ଶ୍ରୀକୃଷ୍ଣ ପ୍ରକାଶ ।
ଅକ୍ରୂର କହେ ଅହେ ପୀତବାସ ॥ ଏଠାରେ କ୍ଷଣେମାତ୍ର ଥାଅରହି ।
ଏ ଜଳେ ସ୍ନାନ କରି ଯିବ ମୁହିଁ ॥ ଏମନ୍ତେ ବୁଡ଼ିଲେ ଯମୁନାଜଳେ ।
ଶ୍ରୀକୃଷ୍ଣ ରାମଙ୍କୁ ଦେଖିଲେ ତୋଳେ । ଅକ୍ରୂର ବସ୍ତୁରକର ଚଉରେ ।
ଜଳରୁ ଏତ ଅଇଲେ କେମନ୍ତେ । ଏମନ୍ତେ କୂଳକୁ ଦେଲେ
ଅନାଇଁ । ଦେଖିଲେ ରଥେ ଛନ୍ତି ଦୋନ ଭାଇ ॥ ପୁଣି ବସ୍ତୁର
କରନ୍ତି ଚଉରେ । ତାହାକୁ ଦେଖିଲ ଜଳଭିତରେ ॥ ଜଳରେ
ପୁଣି ବୁଡ଼ି ଅନାଇଲେ । ବ୍ରହ୍ମ ହ୍ରଦରେ ପ୍ରବେଶ ହୋଇଲେ ॥
ଦେଖିଲେ ଅନନ୍ତ କୋଳେ ମୁରାରି । ଶଙ୍ଖ ଚକ୍ର ଗଦା କମଳ
ଧରି ॥ ବ୍ରହ୍ମା ମହେଶ୍ୱର ନାରଦଯତି । ପ୍ରହ୍ଲାଦଶୁକଦ ସ୍ତୁତିକରନ୍ତି ।
ଶ୍ରୀଯ୍ରୀ ମାୟୁଶ୍ରଦ ଅଷ୍ଟ ଶକତି । ପାରୁଷଦଗଣ ବେଢ଼ିଅଛନ୍ତି ॥
ଦେଖି ବହୁ ସ୍ତୁତିକଲେ ଅକ୍ରୂର । ଜୟ ଜୟ ପ୍ରଭୁ କରୁଣାକର ॥
ଏମନ୍ତେ ସ୍ନାନସାରିଣ ଅକ୍ରୂର ପ୍ରବେଶ ହୋଇଲେ ରଥ ଉପର ॥
ଶ୍ରୀହରି ହସି ପଚାରନ୍ତି ଏହା । ଏ ଜଳ ଭିତରେ ଦେଖିଲ କାହା ॥
ଅକ୍ରୂର ବୋଲନ୍ତି ଅନ୍ତରଯାମି । ସବୁର ତୁମ୍ଭେ ଅଛ ପିତା ସ୍ୱାମି ॥
ଏଥି ଉତ୍ତାରେ ନଦୀ ପାରହୋଇ । ମଥୁରାଉପବନେ ହେଲେଯାଇଁ ।
କୃଷ୍ଣ ବୋଲନ୍ତି ଏଠାରେ ରହିବା । କାଲି ମାମୁଙ୍କୁ ଦର୍ଶନ କରିବା ॥
ଅକ୍ରୂର ବୋଲନ୍ତି କରୁଣାକର । ଆଜ ମୋହଘରେ ବିଜୟ କର ॥
କୃଷ୍ଣ ବୋଲନ୍ତି ଅସୁର ମାରିବା । ତୁମ୍ଭ ଘରକୁ ବିଜୟ କରିବା ॥
ଏମନ୍ତେ ଅକ୍ରୂର ମେଲାଣି ହୋଇ । ନୃପତି ଛାମୁରେ ମିଳଲେ ଯାଇଁ ॥
ଅକ୍ରୂର ବୋଲନ୍ତି ଶୁଣ ରାଜନ । ତୁମ୍ଭ ଆଜ୍ଞା କେହୁ କରିବ ଆନ ।
ରାମକୃଷ୍ଣ ଅଦନନ୍ଦ ଗୋପାଳ । ଆଜ ତୋଟାରେ ରହିଲେ ସକଳ ॥

କାଳି ଦରଶନ କରିବେ ଆସି । ଏବେ ସୁଖେ ରହ ଶତ୍ରୁ ବିନାଶି ॥
ଏଥୁ ଅନ୍ତରେ ରାମକୃଷ୍ଣବେନି । ଗୋପାଳସୁତଙ୍କୁ ସଙ୍ଗରେ ଘେନି ॥
ବୋଲନ୍ତି ଏଯେ ମଥୁରା କଟକ । ବହୁଧ ରଚେ ହୋଇଛି ଛଟକ ॥
କେମନ୍ତେ ଶୋଭା ଯେ ଦେଖିବା ଆସ । ଶୁଣି ଗୋପାଳେ ହୋଇ-
ଲେ ହରଷ ॥ ରଙ୍ଗେ ରଙ୍ଗେ ବଜେଇକରନ୍ତି ହସ୍ତ । ସଙ୍ଗେ ଗୋପସୁତେ
ମୁରଲୀ ଧରି ॥ ମଥୁରା ନଗର ନାଗରୀମାନେ । କୃଷ୍ଣ ଦେଖିବାକୁ ହ-
ରଷ ମନେ । ଅଟ୍ଟାଳ ଉପରେ ଉଠିଲେ ଯାଇଁ ॥ କହନ୍ତି ଏକ ଅ-
ନ୍ୟକେ ଅନାଇଁ । କେ ବୋଲଇ ଦେଖ ଦେଖ ଗୋ ମିତ । ମହୀରେ
ମଦନ ମୋହନ ଏତ ॥ କେ ବୋଲଇ ଏଠା ଦେବକୀସୁତ । ନନ୍ଦ-
ମନ୍ଦରେ ରଖିଥିଲା ତାତ ॥ କେ ବୋଲେ ସଖି ଥିରକର ଅନା ।
ଏହୁଟି ପୁତନା ଜୀବନ ନେନା ॥ କେବୋଲେ ଶକଟାସୁରମର୍ଦ୍ଦନ ।
କେବୋଲେ ଜାମଲାର୍ଜ୍ଜୁନ ଭଞ୍ଜନ । ତୃଣା ବକା ବତ୍ସା ଅଘାନାଶନ.
ଏପରା କାଳୀୟଦର୍ପଗଞ୍ଜନ ॥ ଏପରା ଗୋବର୍ଦ୍ଧନଗିରିଧର । ଏ-
ପରା ସୁରପତି ଗର୍ବହର ॥ ଏପରା ମୋହିଲେ ଗୋପଯୁବତି । ଖଣ୍ଡା-
ସୁରକୁ ଦେଲେ ଯମକତି ॥ କେଶୀକି ପେଶିଲେ ଯମସଦନ । ଦେ-
ଖ କରଛନ୍ତି ନଗରଗମନ ॥ ଏବେଟି କଂସପରାଣ ହରିବେ । ଅବନୀ
ଭାର ଉଶ୍ୱାସ କରିବେ । ବେଶ ହେଉଥିଲା କେଉଁ ଅବଳା । ହ-
ସ୍ତରେ ଖଞ୍ଜିଲା ଚରଣ ବଳା ॥ ଅନ୍ନ ଭୁଞ୍ଜୁଥିଲା କେଉଁ କାମିନୀ ।
ଧାଇଁଲା ଯେମନ୍ତ ସଉଦାମିନୀ ॥ କେଉଁ ଡିନସ୍ତ୍ରୀ ସ୍ୱହସ୍ତେ ଅଞ୍ଜନ ।
କରିଥିଲା ଏକ ନେତ୍ରେ ରଞ୍ଜନ ॥ କୃଷ୍ଣ ଦେଖିବାକୁ ନବ ଜଶୋଦା ।
ଅଛିଡ ନସୃନ ଗଲା ପାଶୋରା ॥ କାଣା ଦେଢ଼ଗଲା କେଉଁ ରମଣୀ
ହରିକ ଧରିଅଛି ଭୂମିଟୁଣି ॥ ଶ୍ରୀକୃଷ୍ଣ ନଗର ପ୍ରବେଶ କାଳେ । କୁ-
ସୁମ ବୃଷ୍ଟି କରନ୍ତି ସମୂଳେ ।୧୪୬। ନାରକେଳ ଫଳ ଦୁବ ଉପରେ ।
ପୂର୍ଣ୍ଣକୁମ୍ଭ ଅଛି ପ୍ରତିଦୁଆରେ ॥ ମଙ୍ଗଳ ଦ୍ରବ୍ୟ ସର୍ବେ ଘେନିଛନ୍ତି । ଏ-
ମନ୍ତେ ଶ୍ରୀକୃଷ୍ଣ ବଜେ କରନ୍ତି । ରଜକ ଗୃହକୁ ଦେଖି ଅମ୍ବର । ଯାହା

ଦେହଙ୍କୁ ଯେମନ୍ତ ସୁନ୍ଦର ॥ ରଜକ ବୋଲଇ ତୁମ୍ଭେ ଗୋପାଳ ।
ଆଉରଖିବାର ଜାଣ କେବଳ ॥ ଦେଖ ଏ ବସନ ନୃପତି ଯୋଗ୍ୟ ।
ତୁମ୍ଭେ ତ ପିନ୍ଧିବାକୁ କେବେ ଯୋଗ୍ୟ ॥ କୋପେ କୃଷ୍ଣ ତାକୁ ଚପୋ-
ଢେ଼ ମାର । ମୁଣ୍ଡ ଛିଡିଗଲା ପଡ଼ିଲା ମରି ॥ ଆଉ ରଜକମାନେ ଯେ-
ତେ ଥିଲେ । ବସନ ପକାଇ ପଳାଇ ଗଲେ ॥ ବସନ କୂଢ଼ କରି
ଗୋପସୁତେ । ପିନ୍ଧିଲେ ବସନ ହରଷ ଚିତ୍ତେ ॥ ଏଅନ୍ତେ କଂସବେଶ
କାରୀ ଆସି । କୃଷ୍ଣଙ୍କୁ କହଇ ଅଳପ ହସି ॥ ଅବଧାନ କର କରୁଣା-
କର । ବେଶରେ ପବିତ୍ର କରିବି ତର ॥ ଶ୍ରୀକୃଷ୍ଣ ପ୍ରସନ୍ନ ବଦନ ଜାଣି ।
ବେଶକାରୀ କରେ ବେଶ ବାନ୍ଧେଣି ॥ ସମ୍ମୋହନ କୋଟି କୋଟି
କାମ । ଅତସୀବର୍ଣ୍ଣ ସୁନ୍ଦର ଶ୍ୟାମ । ବିଦ୍ୟୁତ ପରାଯେ ପିତଦୁକୂଳ । ବ-
ନପୁଷ୍ପକାନ୍ତିମୁକ୍ତାମାଳ । ଶିଖିଚନ୍ଦ୍ର ଇନ୍ଦ୍ରଧନୁ ରଞ୍ଜନ । ମୟୂର ମୟୂଖ
[illegible] ଗଞ୍ଜନ । ଅମୃତରସ କରନ୍ତି ବରଷା । ପୋଷନ୍ତି ଭକତ ଚାତକ
ଆଶା । ନାଚନ୍ତି ରଙ୍ଗେ ରଙ୍ଗେ ନଟବର । ମହୀମଣ୍ଡଳ ପରମସୁନ୍ଦର ।
ବେଶକାରୀ ଦେଖି ଆନନ୍ଦ ହୋଇ । ସମସ୍ତଙ୍କୁ ସୁବେଶ କରନ୍ତି ଯାଇଁ ।
ଚାନ୍ଦ୍ରଦେହେ କଳାବାସ ଶୋଭା । ମୁଷ୍ଟିକପଙ୍କେ ଜଳଦ ଆଭା ।
ଗଙ୍ଗା ଯମୁନା ହୋଇଛନ୍ତି ମେଳ । ଦୃଷ୍ଟି ସ୍ଥଳେ ମୋହ ପୀତଦୁକୂଳ ।
ବେଶକାରୀଙ୍କ ବର ଦେଇ ହରି । ସୁଦାମା ମାଳୀ ଦ୍ୱାରେ ବିଜେ କରି ।
ଦେଖି ମାଳୀ ଦଣ୍ଡବତ ହୋଇଲା । ଆଦର କରି ସଦନକୁ ନେଲା ।
ବସିବାକୁ ଦେଲା ଦିବ୍ୟ ଆସନ । ସୁମନେ ସୁମନେ କଲା ମଣ୍ଡନ ।
ବୋଲଇ ପ୍ରଭୁ ମୋ ଦୋଷ ନ ଧର । କରୁଣାସାଗର କରୁଣାକର ।
ପ୍ରସନ୍ନ ମନେ ଭକତ ସୋଦର । ମାଳୀକି ଦେଲେ ଚତୁର୍ବର୍ଗ ବର ।
ସେଠାରୁ ପୁଣି କମଳନୟନ । ପଥରେ କରନ୍ତି ଲୀଳାଗମନ ।
କୁବ୍ଜାକୁ ଦେଖି ଅଳପ ହସି । କହନ୍ତି ମଧୁର କୋମଳ ଭାଷି ।
କୁବ୍ଜା ଅମ୍ଭେଟି ନନ୍ଦନନ୍ଦନ । ଆମ୍ଭକୁ ଦିଅ ସୁଗନ୍ଧ ଚନ୍ଦନ । ଶୁଣି
କୁବୁଜା ଆନନ୍ଦହୃଦୟ । ପୂର୍ବ ଭାଗ୍ୟ ତାର ହେଲା ଉଦୟ । ଯେତ

ପେଡ଼ୀ ଘନସାର ଚନ୍ଦନ । ଘନଶ୍ୟାମ ଅଙ୍ଗେ କଲେ ଲେପନ ।
ପ୍ରସନ୍ନ ତାଙ୍କୁ ହେଲେ ନାରାୟଣ । ଚରଣେ ତାର ମାଡିଲେ ଚରଣ ।
ବାମକରାଙ୍ଗୁଳ ପିଠିରେ ଦେଇ । ଚିବୁକ ବକ୍ଷସ୍ଥଳେ ଦେଲେ ଟେକଇ ।
ସଲକ୍ଷି ଦେଲେ ଯେ କମଳପତି । ତତକ୍ଷଣେ ହେଲା ମୋହନମୂରତି ।
ଅପସରା ପ୍ରାଏ ହେଲା ସୁନ୍ଦର । ଦେଖିଲେ ମୋହ ହେବେ ପୁରନ୍ଦର ।
କୁବୁଜା ଶ୍ରୀହରି ବସନ ଧରି । ବୋଲଇ ଆସ ଯିବା ମୋର ପୁରୀ ।
କଲ ଯେବେ ମୋତେ ଦିବ୍ୟ ମୂରତି । କରିବ କରତି ପୀରତିମତି ।
ଶ୍ରୀକୃଷ୍ଣ ବୋଲନ୍ତି କୋପେ ଏମନ୍ତ । ରାଜାକୁ ଭେଟିଲେ ଯିବି ମୁଁ ସତ ।
ଏମନ୍ତେ କୃଷ୍ଣ ଦେଖି ପୁରଜନ । ପଚାରି ଜାଣିଲେ ଧନୁ ସଦନ ।
ଏମନ୍ତେ ଧନୁଘର ଦ୍ୱାରେ ମିଳ । ଅସୁରମାନେ ହୁଅର ଅଗୋଳ ।
ବୋଲନ୍ତି ନୃପତିର ନାହିଁ ଅଜ୍ଞା । କାହିଁକି ତୁମ୍ଭେ କରୁଛ ଅବଜ୍ଞା ।
କୃଷ୍ଣ ବୋଲନ୍ତି ନ ଜାଣ ଏମନ୍ତ । ଆମ୍ଭପାଇଁ ଧନୁ ହୋଇଛି ଜାତ ।
ଏମନ୍ତେ ତାଙ୍କ ବଚନ ନ ମାନି । ବଳେ ପଶି ଧନୁଁ ଶଙ୍କରେ ଦେନି ।
ଆମସ୍ତ ଅଣି ଭାଙ୍ଗିଲେ କୋଦଣ୍ଡ । ଶବଦେ ଶବଦେ କମ୍ପି ବ୍ରହ୍ମାଣ୍ଡ ।
ଲୀଳା ରସେ ମତ୍ତଗଜ ଯେମନ୍ତ । ଇକ୍ଷୁଦଣ୍ଡକୁ ଭାଙ୍ଗଇ ତୁରିତ ।
ଦେଖି ରକ୍ଷସମାନେ କୋପ ବଢ଼ି । କୃଷ୍ଣଙ୍କୁ ଘଚ୍ଛେପୁର କର ବେଢ଼ି ।
ଧନୁଖଣ୍ଡ ଧରି ରାମ ମୁରାରି । ଅସୁରମାନଙ୍କୁ ପ୍ରହାର କରି । କେଉଁ
ଅସୁର ଗଲା ଓଷ୍ଠ ଛାଡ଼ି । ଅବନୀରେ ପଡ଼ି ଛଟିଲା ଲୁଡ଼ି । କାହାର
ପୁଣି ଫାଟିଗଲା ମୁଣ୍ଡ । ରୁଧିର ବହଇ କାହାର ତୁଣ୍ଡ । ଜୀବନ ଡ-
କଲେ କେତେ ଅସୁରେ । ଆୟୁଧ ଛାଡି ପଳାଇଲେ ଡରେ । ଏମନ୍ତେ
ରାମ କୃଷ୍ଣ ଗୋପସୁତେ । ତୋଟାରେ ରହିଲେ ଆନନ୍ଦଚିତ୍ତେ । ହରି-
ଷେ ଅମୃତମଣୋହି କରି । ରଜନୀ ସୁଖେ କଟିଲେ ଶ୍ରୀହରି । ନୃସିଂହ
ଭ୍ରମରବର ମନ । ସାଧୁଜନ ହୃଦେ କରି ସଦନ । ୧୯୪ । .

### ଦଶମବୋଲ ।

ଏଥୁଅନ୍ତରେ ଜଣୀ ସମୟେ କଂସ । ବାସ ବେଶହିଁ ସବୁ ମଣଇ

ବସ । ଗଛିପଲଙ୍କେ ନିଦ୍ରା ପଲବେ ନୋହେ । ଚନ୍ଦ୍ରାଙ୍କୁର ପୂରିଛି
ସମସ୍ତ ଦେହେ । ପ୍ରାନ୍ତପହର ଏମନ୍ତ ହେଲା ନିଶୀ । ଷଣେ ନେତ୍ରକୁ
ନିଦ୍ରା ଗ୍ରାସିଲା ଆସି । ଲିପି ହୋଇଛି ଉଇଳ ସର୍ବ ଅଙ୍ଗ । ଗଳେ
ମନ୍ଦାରମାଳା ହୋଇଛି ସଙ୍ଗ । ଗର୍ଧପିଠିରେ କରୁଛି ଆରୋହଣ ।
ଗଳେ ଫାଶ ଲଗାଇ କୃତାନ୍ତଗଣ । ଦଣ୍ଡଧର ଯମୁକୁ ନିଅନ୍ତି ବେଗେ ।
ଏହି ସ୍ୱପନ ଦେଖିଣ ଚନ୍ଦବେଗେ । ନିଦ୍ରା ଅନ୍ତେ ବିରସ ପଲଙ୍କେ ବସି ।
ଅନାଇଲେ ପ୍ରଭାତ ହେଲାଣି ଆସି । ଅସ୍ତଗିରେ ମସ୍ତକ ମଣ୍ଡିଲା ଶଶୀ ।
ତାମ୍ରପଟ୍ଟଳ ତାର ଗଗନ ଦିଶି । ଦେଖି ମୁଦ୍ରିତ ହେଲା କୁମୁଦବନ ।
ଦୁଃଖାଣ୍ଡିବେ କ୍ରନ୍ଦିଲା ଚକୋର ମନ । ଦରମୁକୁଳ ହେଲେ କମଳ-
କଳି । ରସଆଶେ ଭୃଙ୍ଗ ଆସି ପାଟିଗ ବେଢ଼ି । ପୂର୍ବପର୍ବତ ଶିରେ
ପ୍ରବେଶ ରବି । ଚକ୍ରବାକ ବିଚ୍ଛେଦ ପର୍ବତ ପବି । ଦେବଆଳୟେ
ଶଙ୍ଖ ଶବଦ ପୂରେ । ପକ୍ଷିଗଣସ୍ୱରେ ଅବନୀ ପୂରେ । ଏହି ସମୟେ
ଅଛି ବିକଳ କଂସ । ସିଂହାସନରେ ହୋଇଲା ପରବେଶ । ଦୁଃଖ-
ରେ ଦର୍ପଣେ ମୁଖ ଚାହିଁ । ପ୍ରତିବିମ୍ବେ ଦେଖିଲା ମସ୍ତକ ନାହିଁ ।
ଛନଛନ ମନରେ କରଇ ଡର । ଆସି ମରଣକାଳ ହୋଇଲା ମୋର ।
ପାଶେ ବିଶ୍ୱାସ ଲୋକମାନଙ୍କୁ ଆଣି । ମାହୁନ୍ତକୁ ବୋଲନ୍ତି ଏମନ୍ତ
ବାଣୀ । ଶୁଣ ତୁମେ ଚଢ଼ିଥିବ କୁବଳୟା ହସ୍ତୀ । କୃଷ୍ଣ ଅଇଲେ ପକାଇ-
ବଟି ମାରି । ମାଲମାନଙ୍କୁ ଚାହିଁ ବୋଲନ୍ତି ଏହା । ମୋର କପଟି
ବେଳକୁ ହୁଅ ସାହା । ରାମ ଗୋବିନ୍ଦ ଆସିବେ ଯେତେବେଳେ । ତୁମ୍ଭେ
ସମର କର ଜାଣିବ ବଳେ । ଏତେ ବୋଲି ଜଗତରେ ବିଜେ-
କର । ମଞ୍ଚଉପରେ ଲୋକେ ଅଛନ୍ତି ପୂରି । ସଙ୍ଖାଗଣ ଅନେକ ଅଛନ୍ତି
ଆସି । ଋଷିମାନେ ଅନେକ ଅଛନ୍ତି ବସି । ବସୁଦେବ ଦେବକୀ ଯେଉଁଥିଲେ
ତହିଁ । ନନ୍ଦ ଆଦି ଗୋପାଳେ ଅଛନ୍ତି ରହି । ବାଜୁଅଛି ଟମକ ନିଶାଣ
ଭେରୀ । ବୀରବାଦ୍ୟ ନାଦେ ମଞ୍ଚ ଅଛି ପୂରି । ବୀରମୁଖକୁ ଚାହିଁ ବୋଲନ୍ତି
କଂସ । ରାମକୃଷ୍ଣଙ୍କୁ ଯାଇ ତୁ ବେଗେ ଆଣ । ବୀରବଚନେ ସ୍ୱମ

ଗୋବନ ବେଳ । ସଜ ହୋଇଲେ ଗୋପସୁତଙ୍କୁ ଘେନ । ନୀଳ-
ଜଳଦ ଶ୍ୟାମସୁନ୍ଦର ଅଙ୍ଗ । ପୀତବସନ କଟିତଟରେ ଶୋଭା ।
ଶିରେ ମୟୂରଚନ୍ଦ୍ରିକା ଚୂଳ ଶୋଭା । ଚୂଳ ମୂଳରେ ଠୁଳ କୁସୁମଗୁଚ୍ଛା ।
କର୍ଣ୍ଣଯୁଗେ ମକରକୁଣ୍ଡଳ ଶୋହେ । ନାସେ ବର୍ତ୍ତୁଳ ମୁକୁତା ମନ
ମୋହେ । କଣ୍ଠତଟରେ ମୁକୁତା ମାଳା ଶୋଭା । ହୃଦେ ରାଜେ କଉ-
ସ୍ତୁଭ ମଣି ପ୍ରଭା । କରେ କଟକ ବାହୁଟି ଶୋଭା ଅତି । ଅଙ୍ଗୁଳିରେ
ବସନ୍ତେ ମୁଦ୍ରିକାପନ୍ତି । ପାଦେ ରତନ ନୂପୁର ଧ୍ୱନି କରେ । କୃଷ୍ଣ
ହଳଧର କରନ୍ତି ଧୀରେଧୀରେ । କଂସ ସିଂହଦ୍ୱାରେ ଯଦୁସିଂହ ଉଭା ।
କୋଟିସିଂହ ଠାଣି କୋଟିକାମ ପ୍ରଭା । ହସ୍ତୀ ଚଢ଼ି ମାହୁନ୍ତ ରହିଛି
ଦ୍ୱାରେ । ହରି ଅଳପ ହସି କହନ୍ତି ଧୀରେ । ଉଠ ଉଠ ବେଗେ ଛାଡ଼
ଛାଡ଼ ବାଟ । ଆମେ ମାମୁଁଙ୍କ ସଙ୍ଗେ ହୋଇବୁଁ ଭେଟ । ଶୁଣି ମାହୁନ୍ତ
କୋପେ ବୋଲଇ ବାଣୀ । ଭେଟ ହେବ ମୋତେ ଯେବେ ଯିବ
ଜିଣି । କଟିତଟେ ବସନ ଭିଡ଼ିଲେ ହରି । ଦେଖି ମାହୁନ୍ତ ଚିହ୍ନା
ଗରଜଇ । କରେ କୃଷ୍ଣଙ୍କୁ ଲେଢ଼ିଲା କୁବଳୟା । ଗଳଗଲେ ହରି ଧରି
ଲୁଦ୍ରକାୟା । କଳି ଲାଙ୍ଗୁଡ଼ ଧରି ବୁଲାନ୍ତି ହରି । ଯଥା ଗରୁଡ଼ ସର୍ପକୁ
ଆଣି ଧରି । କ୍ରୀଡ଼ାକନ୍ଦୁକ ଯୋଏ ଫିଙ୍ଗିଲା ପ୍ରାୟେ । ତାକୁ ବୁଲାଇ
ପିଟିଲେ ଦେବରାଏ । ଖଣ୍ଡଦୂରେ ପଡ଼ି ବେଗେ ଉଠିକରି । କୃଷ୍ଣ
ଶ୍ରୀଅଙ୍ଗରେ ଜେଇ ଦନ୍ତ ମାରି । ତହୁଁ ପଳାଇ ଗଲେ ଅଖିଳପତି ।
ଦନ୍ତ ନ ବାଜି ମାଟିରେ ହେଲା ଗୋଡ଼ । ବାମପାଦେ କରି-ଶିର
ମାଡ଼ି ହରି । ବେନଦନ୍ତ ଉପାଡ଼ି ଶ୍ରୀହସ୍ତେ ଧରି । ବଜ୍ରପ୍ରାଏ ତାହାକୁ
ପ୍ରହାର କଲେ । ମଲା କୁବଳୟା ମାହୁନ୍ତର ଭୁଲେ । ରାମକୃଷ୍ଣ ହସ୍ତି-
ଦନ୍ତ କରେ ଧରି । ଭଙ୍ଗେ ରଙ୍ଗସଭାକୁ ଚଳେ ବକ୍ରେକରି । ମଲ୍ଲ-
ମାନଙ୍କୁ ବଜ୍ର ପରାଏ ଦିଶି । ବୃଷ୍ଣି ବୋଲି ବିଚାର କରନ୍ତି ଋଷି ।
ଯୋଗିମାନଙ୍କୁ ଦିଶିଲେ ତତ୍ତ୍ୱ ପ୍ରାଏ । ନାରୀଗଣ ମଣନ୍ତି କନ୍ଦର୍ପପ୍ରାଏ ।
ଯଦୁବଂଶକୁ ବନ୍ଧୁ ପରାଏ ପ୍ରତେ । ସାଖାପ୍ରାଏ ଗୋପାଳେ ମଣନ୍ତି

ଚତ୍ରେ । ପିତାମାତାଙ୍କୁ ଦଶିଲେ ପୁତ୍ରପ୍ରାୟେ । କାଳପ୍ରାଏ କଂସର
ହୋଇଲା ଭୟେ । ମୋହ ସଙ୍ଗରେ ବନ୍ଧୁ ସମର କର । ହେବେ
ନଷ୍ଟୟେ ହେତବ ଦଣ୍ଡଧର । କୃଷ୍ଣ ବୋଲନ୍ତି ତୁମ୍ଭେ ସହଜେ ମାଲ ।
ଏତେ ଅନୀତ କଲେ କହେବ କଲ । କୃଷ୍ଣବଚନ ଶୁଣି ଚାଣୁର
ରାଗେ । ବେନିକରେ ହରିଙ୍କି ଭିଡ଼ିଲା ବେଗେ । କ୍ରିଦାକ୍ରନ୍ଦ ହେଲେ
ବେନପାଦ ପାଣି । ଚକ୍ଷୁଂ ଚାଣୁର ପିଠାଇ ଗଲା ପୁଣି । କୃଷ୍ଣହୃଦରେ
ମାଇଲା ବେନ ମୁଷ୍ଟି । ଦୋରଧ୍ୱନି ପୂରିଲା ସମସ୍ତ ସୃଷ୍ଟି । ପୂଲମଣ୍ଡା
ଗଜକୁ ମାଇଲା ପ୍ରାୟେ । ଭୟ ଲେଶେହେଁ ନ କଲେ ଦେବରାୟେ ।
ଚାଣୁରକୁ ମହୀରେ ପକାଇ ହରି । ଅରବିନ୍ଦକରେ ବେନି କରଧରି ।
ବାମପାଦଭିତରେ ତା ପାଦ ରଖି । ଅରପାଦେ ମାଇଲେ କମଳଆଖି ।
ଘୋରଗର୍ଜନ କରି ଚାଣୁର ମଲା । କୃଷ୍ଣଅଙ୍ଗେ ତା ଜୀବନ ଲୀନ
ହେଲା । ପୁଣି ମୁଷ୍ଟିକ ରାମ ନିକଟେ ମିଳ । ଦୂରେ କରନ୍ତି ବାହୁସ-
ମର କେଳ । ଭୁଜେ ଭୁଜେ ଚରଣେ ଚରଣ ଦେଇ । ବେନି
ମୁଣ୍ଡରେ ମୁଣ୍ଡ ଛାଡ଼ନ୍ତି ନେଇ । ରାମ ମୁଠୋଢ଼େ ମାଇଲେ କୋପ-
କରି । ମଲା ମୁଷ୍ଟିକ ରକତ ଉଦଗାରି । କୁଟକାମରେ ମାଲେ ମିଳିଲା
ପୁଣି । ବିଁଧାମାରି ମାଇଲେ ମୂଷଳପାଣି । ସରତୋଷଳ ଆଦି ମାଲଙ୍କୁ
ହରି । ହେଲେ ମାଇଲେ ପ୍ରାଣେ ପ୍ରହାର କରି । ଅଂକଶେଷ ଆଉ
ଯେତେ ମାଲ ଥିଲେ । ପ୍ରାଣ ବଳଲେ ଡରେ ପଳାଇ ଗଲେ ।
ଗୋପକୁମର ସଙ୍ଗରେ ବନମାଳୀ । କଂସ ରଙ୍ଗସଭାତଳେ ଯାଇଁ
ମିଳି । ଚଳଦଳ ଅନଳ ଚଞ୍ଚଳ ପ୍ରାୟେ । ଥରହର କମ୍ପଇ କଂସର
କାୟେ । ଶୂରମାନଙ୍କୁ ଡାକି ବୋଲଇ ରାଗେ । ରାମକୃଷ୍ଣଙ୍କୁ ଏଠାରୁ
ନିଅ ବେଗେ । ଯୀନ୍ନା ବଳାଇ-ବାହାର କରିଦିଅ । ନନ୍ଦଆଦି ଗୋ-
ପାଳମାନଙ୍କୁ ନିଅ । ବସୁଦେବ ଦେବକୀ ସହିତେ ବନ୍ଧ । ଖଡ୍ଗପ୍ରହାର
କରି ପକାଅ ମାରି । ଗର୍ବଗଞ୍ଜନ ଦୁଷ୍ଟଦଳନ ହରି । କୋପେ
କମ୍ପଉପରେ ଡକେକରି । ଦେଖି ଖଡ଼ଗ ଧରି ମାଇଲା କଂସ ।

କୃଷ୍ଣ ତାହାର ବେଗେ ଧଇଲେ କେଶ । ତାକୁ ଜଗଡଗ୍ରୁଲକୁ ପେଲି
ଦେଇ । ସେହୁସଙ୍ଗେ ଉପରେ ପଡ଼ିଲେ ଡେଇଁ । କଂସ ଜଗଡ
ତଳରେ ପଡ଼ି ମଲା । ପ୍ରାଣ ଶ୍ରୀକୃଷ୍ଣ ଅଙ୍ଗରେ ଲୀନ ହେଲା । ରଙ୍ଗ-
ସଭାତଳେ ଘୋଷାରିନ୍ତି ହରି । କଂସକେଶ ଶ୍ରୀକରରେ ଧରିକରି ।
ବ୍ରହ୍ମ ଇନ୍ଦ୍ର ରୁଦ୍ରଆଦି ଦେବଗଣ । କୃଷ୍ଣଶିରେ କଲେ ପୁଷ୍ପ ବରଷଣ ।
ବାଦ୍ୟାଥରେ ବଜାନ୍ତି ମଦଳ ତାଳ । ରଙ୍ଗେ ନାଚୁଛନ୍ତି ଅପସରା
କୁଳ । ସାଧୁପୁରୁଷେ କହନ୍ତି ଜୟ ଜୟ । ଦୁଷ୍ଟ ଦାନବମାନଙ୍କୁ ହେଲା
ଭୟ । ମନ୍ଦଗନ୍ଧ ଶୀତଳ ପବନ ବହେ । ମହାଭାଗ୍ୟ ନିଶ୍ୱାସ ମୋଇଲା
ଧରା । କଙ୍କ ନଗ୍ରୋଧ ଆଦି ଅସୁରମାନେ । ଭାଇ ଛଳରେ ଅସି
ମିଳିଲେ ରଣେ । କୋଟି ଶତକୋଟି ସୂର୍ଯ୍ୟ ତେଜରାମ । କୋଟି ମହାମତ୍ତ
ଗଜ ପରାକ୍ରମ । କରେ ବଜ୍ରସମାନ ପହରା ଧରି । ହେଲା ମାତ୍ରକେ
କଂସ ଭାଇଙ୍କି ମାରି । କଂସ ମଲା ମଲା ବୋଲି ହେଲା ଗୋଳ ।
ମଧୁରାରେ ଦିଶିଲା ଅମଙ୍ଗଳ । ଅନ୍ତଃପୁର ପୂରିଲା ରୋଦନବାଣୀ ।
ଅସି କଂସକୁ ଧରି କାନ୍ଦନ୍ତି ରାଣୀ । ଅହେ ଉଠଉଠ ବେଗେ
ଦଣ୍ଡଧାରୀ । କେତେବେଳେ ମହୀରେ ଶୟନ କରି । ଯେତେରୂପେ
କହିଲେ ମଉନ ହେଲ । ଆମମାନଙ୍କୁ କାହାକୁ ଦେଇ ଚଳ ।
ଦେଖ ଦଇବକୁ କେହି ନୋହେ ବଳ । କେତେବେଳେ କାହାକୁ
ନ କରେ କାଳ । ଚନ୍ଦ୍ରସୂର୍ଯ୍ୟ ଡରେ ନ ପାରନ୍ତି ଗୃହି । ଦେଖ
ଦେଖ ଏବେ ଅସିଅଛୁଁ ତାହିଁ । ଅମ୍ଭେ ଅନାଥିନୀ ହେଲୁଁ ରାଣୀ
କୁଳ । ଏହା ଦେଖି ଭୂମୀର ନୋହୁଛି ତଳ । ମାଉଁମାନଙ୍କ
ରୋଦନ ଶୁଣି ହରି । ପାଶେ ମିଳି କହନ୍ତି ପ୍ରବୋଧ କରି । ଅଗୋ
ଅଗୋ ମାଉଁମାନେ ଶୁଣ ଶୁଣ । ମୋର ଲେସେହେଁ ଦୋଷ ନାହିଁ
ପୁଣ । ବଡ଼ ଅନାଚ ମାମୁଁ ଅସୁର କଲେ । ମୋତେ ହସ୍ତୀ ଲଗାଇ
ମରାଉ ଥିଲେ । ତହୁଁ ଡରେ ପଳାଇ ଗଲି ମୁଁ ଯୋଗେ । ମାଲ-
ମାନେ ବେଢ଼ି ମାରୁଥିଲେ ରଙ୍ଗେ । ତେତେବେଳେ ହେଁ ଦୟା ଗୋ

ଭଲେ ନାହିଁ । କୋପେ ବୋଇଲେ ଗୃହମାନଙ୍କୁ ଗୃହି । ସ୍ଵମ
କୃଷ୍ଣଙ୍କୁ ଏଠାରୁ ପେଳଯାଅ । ସୀମା ବଳାଇ ବାହାର କରି ଦିଅ ।
ଉରେ ଜଗଛ ଉପରେ ଦେଲ ଯାଇଁ । ମୋତେ ଦେଖି ମାମୁ ଖଣ୍ଡା
ଧର ଧାଇଁ । ମୋତେ ଛଳକୁ ପକାଇ ଦେଲେ ରାଗେ । ମାମୁ ବର
ଧର ପାରିଲ ମୁଁ ବେଗେ । ମୁଁ ଗୋ ଉପରେ ମାମୁ ପଡଲେ ଛଳେ ।
ସେଗୋ ମଲେ ମୁଁ ଜାଇନୁ ଅର୍ମଳେ । ମାୟାସଂସାର ସିନା ଗୋ
ଏହିମଛ । କେତେବେଳେ ହଉଥାଇ କେଉଁ ଗଛ । ଦେହ ବହ
କେହି ଏଥି ଯାଇନାହିଁ । ଦୁଃଖ ସୁଖ ଚିର ହୋଇ ରହିନାହିଁ ।
ଗଲା କଥା ଗୋ ଏବେ ଛେଣିକ ଯାଉ । ଶୋକ କଲେ କି ମାମୁ
ଅସିବେ ଅଉ । କଂସ ଭାଇମାନଙ୍କ ଭାର୍ଯ୍ୟାଗଣେ । ବେଢ଼ି ରୋଦନ
କରନ୍ତି ଜଣେ ଜଣେ । ମାଇଁ ମାନଙ୍କୁ ପ୍ରବୋଧ କରି ହରି । କଂସ
ରାଜାକୁ ଅଗ୍ନି ସଂସ୍କାର କରି । ମାତାପିତାଙ୍କ ପାଦୁ ସାଙ୍କୋଳ ଫେଡ଼ି ।
ରାମକୃଷ୍ଣ ବେନି ପାଦତଳେ ପଡ଼ି । ବସୁଦେବ ଦେବକୀ ଅନନ୍ଦ
ହୋଲେ । ବେନି ପୁତ୍ରଙ୍କୁ ଦୁହେଁ ଧଇଲେ କୋଲେ । କୃଷ୍ଣ ଅଣ୍ଡା-
ଦେଲେ ତାହ୍ମେ ଭାଗ୍ୟହୀନ । ତୁମ୍ଭପାଦସେବାରେ ନ ହେଲୁଁ
ଦିନ । ବସୁଦେବ ବୋଲେ ତୁ ଦୋଷ କ୍ଷମାକର । ପିତାବୋଲି ବୋଲ-
ଇବ ମୋହଗ୍ରସ୍ତ । ବ୍ରହ୍ମା ରୁଦ୍ର ମହିମା ନଜାଣେ ଯାର । ମହାଭାର
ନିବାରିଣ ଅବତାର । ପିତାମାତାଙ୍କୁ ଶ୍ରୀକୃଷ୍ଣ ମାୟା କଲେ । ପୁତ୍ର
ସ୍ନେହ ଧରି ମୁଖେ ଚୁମ୍ବ ଦେଲେ । ଏଥୁଅନ୍ତରେ ରଙ୍ଗସଭାରେ
ମିଳ । ଉଗ୍ରସେନଙ୍କୁ ବୋଲନ୍ତି ବନମାଳୀ । ତୁମ୍ଭେ ମଥୁରାକଟକେ
ହୁଅ ରାଜା । ପୁତ୍ରସମାନ କରି ପାଳିବ ପ୍ରଜା । ଉଗ୍ରସେନ ବୋଲେ
ତୁମ୍ଭେ ଥାଉଁ ଥାଉଁ । ପ୍ରଭୁ ତୁମେ ଏହୁ ଅଜ୍ଞା କାହିଁକି କୋହୁ ।
କୃଷ୍ଣ ତୁବୋଲନ୍ତି ଅଛି ଯଜାତି ଶାପ । ଆମ୍ଭବଂଶରେ କେହି ନୁହନ୍ତି
ନୃପ । ଶୁଣି ବାର ତଥି ତାରଚନ୍ଦ୍ର ଜାଣି । ତାକୁ ନୃପତି କଲେ
ଚିମନ୍ତପାଣି । ଶୁଭେ ମଥୁରା କଟକେ ଭଗବାନ । ନାନା କଳୋଦେ-